କୃତଜ୍ଞତା ସ୍ୱୀକାର :

ଶ୍ରଦ୍ଧାସ୍ପଦେଷୁ ଭାଗ୍ୟଧର ଭାଇ, ଡକ୍ଟର ଶ୍ରୀଚରଣ ମହାନ୍ତି...

ନିବେଦକ - ଭାରତ ଭୂଷଣ ମହାନ୍ତି

ପୂର୍ବପୁରୁଷଙ୍କ ଆତଯାତ ସ୍ଥଳ :
ଗ୍ରାମ : ନୂଆଗାଁ ଶାସନ
ପୋଷ୍ଟ : ସାଇଲୋ ଗୋବିନ୍ଦପୁର-୭୫୪୦୦୩
ଜିଲ୍ଲା : କଟକ
ଫୋନ୍ ୦୬୭୧-୨୧୧୪୯୪୩

ଏବର ଠିକଣା :
'ଅରୋଶ୍ରୀ'
ପ୍ଲଟ ନମ୍ବର-୩୩୬୧/୪୦୦୩
ମ୍ୟୁନିସିପାଲ ହସ୍ପିଟାଲ ରୋଡ
ଭୁବନେଶ୍ୱର-୭୫୧୦୦୨
ଫୋନ୍ : ୦୬୭୪-୨୫୯୧୮୧୧
୯୪୩୭୧୭୬୬୩୩

ଜନ୍ମଦାତା ପିତା ଶିଖାଇଥିଲେ କୃତଜ୍ଞତାର ମନ୍ତ୍ର । କୃତଜ୍ଞତା ଭାବକୁ କଣ ଭାଷାଦେଇ ହୁଏ ? ଯାହା ହେଉ, ପାଳୟିତ୍ରୀ ଜନନୀଙ୍କ ପାଇଁ କୃତଜ୍ଞତା ଭାବରେ ଅନୁପ୍ରାଣିତ ଏ ଆତ୍ମଜୀବନୀ ମୂଳକ ଅନୁଲିଖନକୁ ନିବେଦନ କରୁଛି ଅନ୍ତଃସ୍ୱରର ଅସୀମ କୃତଜ୍ଞତା ସହ, ବିଶ୍ୱଜନନୀ ଶ୍ରୀମାଙ୍କ ଶ୍ରୀଚରଣରେ ।



ଶ୍ରୀମତୀ ତାରାମଣି ମହାନ୍ତିଙ୍କ ସ୍ମୃତିରେ କୃତଜ୍ଞତାର ଅର୍ଘ୍ୟ ।
ଜନ୍ମ - ୧୯୨୦ ମସିହା (ସାବିତ୍ରୀ ଅମାବାସ୍ୟାର ଦୁଇଦିନ ପରେ) ।
ଦେହାବସାନ - ୫ ସେପ୍‌ଟେମ୍ବର ୨୦୦୮ ରାତି ୧୦ଟା ୩ ମିନିଟ ।

# ପ୍ରଥମ ଅଙ୍କ

ଏ କାହାଣୀ ଯଶୋଦାର, ଦ୍ୱାପରର ନୁହେଁ, କଳିଯୁଗ ଯଶୋଦାର। ଯଶୋଦା ଉପଜୀବ୍ୟ ଏ କଥନିକାର। ଏହା ଏକକ ଅଭିନୟର ନାଟକ ତ ନୁହେଁ। ଯଶୋଦାଙ୍କ କଥା କହୁ କହୁ ପାର୍ଶ୍ୱଚରିତ୍ରମାନେ ଆପେ ଆପେ ଚାଲି ଆସିବେ, ହେଲେ ଯଶୋଦା ଏ କାହାଣୀର ମୁଖ୍ୟ ଚରିତ୍ର।

ଦ୍ୱାପରର ଯଶୋଦା ଭାରତୀୟ ମାତୃ[illegible] ଚିର ପୂଜନୀୟା, ବାତ୍ସଲ୍ୟ ମମତାର ପ୍ରତିବିମ୍ବ। କାହ୍ନୁ ତାଙ୍କ ନୟନର ତାର , [illegible]ଣର ସ୍ପନ୍ଦନ। ତାଙ୍କ ହୃଦୟରେ ଥିଲା ଅସରନ୍ତି ପ୍ରେମ, ଭଲ ପାଇବା, ସବୁ ଯେପରି କେନ୍ଦ୍ରୀଭୂତ ହୋଇଥିଲା କଳାକାହ୍ନୁଙ୍କ ପାଖରେ। ଏକବିଂଶ ଶତାବ୍ଦୀର 'E' ଇଲୋକ୍‌ଟ୍ରୋନିକ୍ ଯୁଗରେ ସେ କାଚବନ୍ଧା ଚିତ୍ର ଆଉ ଦେଖିବାକୁ ମିଳିବ ନାହିଁ। କିନ୍ତୁ ପଚାଶ / ଷାଠିଏ ବର୍ଷ ତଳେ ଅଧିକାଂଶ ଓଡ଼ିଆ ଘରର ମାଟିକାନ୍ଥରେ ଥିଲା ଚମ୍ପାଫୁଲରଂଗର ମମତାମୟୀ ଯଶୋଦାଙ୍କ କାଖରେ ଶିଶୁ କାହ୍ନୁଙ୍କ ସିନ୍ଥାରେ ମୟୂର ଚିନ୍ଦ୍ରିକା, ଅଣ୍ଟାରେ, କଣ୍ଠରେ, ପାଦରେ ଅଳଙ୍କାର।

କେଉଁ ଜନ୍ମରେ ଅନ୍ତରଙ୍ଗ ଅଭୀପ୍ସା ସେ କରିଥିଲେ ହୁଏତ, ଅନ୍ତର୍ଯ୍ୟାମୀ ଅନ୍ତର ବୁଝି, ଅବତାର ଗ୍ରହଣ କରି, ଶୈଶବ ବାଳକାଳର କେତେ ବର୍ଷ ଆତଯାତ ହୋଇଥିଲେ ଯଶୋଦାଙ୍କ ପୁତ୍ର ରୂପେ, ନନ୍ଦପୁରୀରେ। ଯେଉଁଦିନ ପାଟି ମେଲାଇ ବିଶ୍ୱବ୍ରହ୍ମାଣ୍ଡ ଦେଖାଇଥିଲେ କାହ୍ନୁ, ଯଶୋଦା କ'ଣ ଜାଣି ପାରିନଥିଲେ ତାଙ୍କର ପରିଚୟ ? ନାଁ ସେ କରିଥିଲେ ଆତ୍ମପ୍ରତାରଣା-ସେ ପ୍ରଶ୍ନ ପଚାରି ନାହାନ୍ତି କେହି ! କାହ୍ନୁଙ୍କୁ ନେଇ ଯଶୋଦାଙ୍କ ସଂସାର; ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ, ତିନି ଭୁବନ-କାହ୍ନୁଙ୍କ ବ୍ୟତୀତ ଜୀବନ ନଥିଲା ଯଶୋଦାଙ୍କର। ହେଲେ ଅକ୍ରୂରର ଆମନ୍ତ୍ରଣରେ କାହ୍ନୁ ଚାଲିଗଲେ ମଥୁରା-ଆଉ ତ ଫେରି ନଥିଲେ ଗୋପପୁର। କାହ୍ନୁ କଣ ନିଷ୍ଠୁର ? କାହ୍ନୁଙ୍କ ଅବର୍ତ୍ତମାନରେ କିପରି ବିତିଲା ଯଶୋଦାଙ୍କ ଦିନ ? ସେ ସବୁ ଅନ୍ୟକଥା... ଯଶୋଦା କିନ୍ତୁ ନଥିଲେ କାହ୍ନୁଙ୍କ ଗର୍ଭଧାରିଣୀ ମା। ସଂର୍ପକରେ ମାତୁଳପତ୍ନୀ, ମାଇଁ। ଏ କଳିଯୁଗ ଯଶୋଦାର ଜୀବନରେ ମଧ୍ୟ ସେମିତି କିଛି ଘଟଣ ବା ଅଘଟଣ ଘଟିଥିଲା। ନିଜ ଗର୍ଭଜାତ ନୁହେଁ, ବଡ଼ ମହିଅାଁ ନଣନ୍ଦଙ୍କ ସାନପୁଅକୁ ନେଇ ଗଡ଼ି

ଉଠିଥିଲା ତା'ର ସଂସାର, ତା'ର ସବୁ କିଛି। ଦ୍ୱାପରରେ କାହ୍ନୁ ଥିଲେ ଯଶୋଦାଙ୍କର, ଏକାନ୍ତ ଭାବେ ନିଜର, ଭାଗ ନେବାପାଇଁ ନଥିଲେ ଯାଆ ବା ସପତ୍ନୀ। କିନ୍ତୁ ଏ କାହାଣୀର ଯଶୋଦାର ସଂପୂର୍ଣ୍ଣ ଅଧିକାର ନଥିଲା କାହ୍ନୁ ଉପରେ। ସେ ତାହା ବୁଝିଥିଲା। ଋଷିତୁଲ୍ୟ ଶ୍ୱଶୃରଙ୍କ ଆଦର୍ଶରେ ଜୀବନ ବଞ୍ଚି, ସେ କାହ୍ନୁଙ୍କୁ ବୟସ ନ ହେଉଣୁ ଭଲଭାବେ ବୁଝାଇ ଦେଇଥିଲା- "ବାବୁ, ତୁ ଆମ ତିନି ଜଣଙ୍କର। ସମସ୍ତଙ୍କୁ ସମାନ ଦେଖିବୁ।" ସମାନ ଭିତରେ ଅସମାନ ଥିଲା ସିଏ। ତା' ଭଲ ପାଇବା ଅଲଗା ବାରି ହୋଇ ପଡୁଥିଲା।

କାହ୍ନୁର ପ୍ରତିକୋଷରେ ଏବେବି ସ୍ପନ୍ଦିତ ହେଉଛି ଯଶୋଦାର ସ୍ନେହ ଓ ଆଶୀର୍ବାଦର ସ୍ୱାକ୍ଷର। କେଜାଣି କେତେବର୍ଷ ବିତିଗଲାଣି। ଯଶୋଦା ଜୀବନର ଅପରାହ୍ନ ପରେ ଗଭୀର ରାତି। ତେଲ ସରି ଆସିଲାଣି। ଦୀପ ଲିଭି ଲିଭି ଆସୁଛି। କାହ୍ନୁ ଆଜି ସ୍ମୃତି ଚାରଣ କରୁଛି। ଲେଖୁଛି ଆତ୍ମକଥା, ଯଶୋଦାର ଭଲ ପାଇବାର କଥା। ଖାଦ ନମିଶିଲେ ଖାଣ୍ଟି ସୁନାରେ ଅଳଂକାର ଗଢ଼ିହୁଏ ନାହିଁ। ଅଙ୍ଗେ ନିଭା କଥା ସଙ୍ଗେ କଳ୍ପନାର ପୁଟ ନ ଦେଲେ ଗଳ୍ପ ଲେଖି ହୁଏନାହିଁ। କାହ୍ନୁ କିନ୍ତୁ କଥା ଦେଉଛି, ଏକ ଆତ୍ମକଥା ହେବ ସତ୍ୟକଥା-ଅତିରଞ୍ଜନ ବା କଳ୍ପନାର ଆଖିଭୁଲା ପ୍ରଲେପ ନଥାଇ। ଏ କଥା ଯଶୋଦାର କଥା। ପୂର୍ଣ୍ଣ ଅବତାର ଶ୍ରୀକୃଷ୍ଣ ଜନନୀ ଯଶୋଦା ନୁହେଁ, ଅନ୍ୟ ଏକ ଯଶୋଦାର କଥା।

...୨

## ଯଶୋଦାର ପରିଚୟ

ଗ୍ରାମ-ବୋଧପୁର, ଭାୟା- ସୋମପୁର, ଜିଲା-ଅବିଭକ୍ତ କଟକ। ପ୍ରାୟ ଦେଢ଼ ମାଇଲ ଲମ୍ବ ଓଡ଼ିଶାର ଅନ୍ୟତମ ବଡଗାଁ ବୋଧପୁର। ଏ ଗାଁର କରଣ, ବ୍ରାହ୍ମଣ ପରିବାର ଓଡ଼ିଶାରେ, ଭାରତରେ ଉଚ୍ଚ ପ୍ରତିଷ୍ଠିତ। ଏ ଗାଁର ପ୍ରତାପ ଚନ୍ଦ୍ର ରଥ ଭାରତର ବିଶିଷ୍ଟ ହୃଦ୍‌ରୋଗ ସର୍ଜନ, ଭୁବନାନନ୍ଦ ରଥ ପ୍ରଥମ ଓଡ଼ିଆ ଚେୟାରମ୍ୟାନ କମ୍ ମ୍ୟାନେଜିଂ ଡାଇରେକ୍‌ଟର ରାଷ୍ଟ୍ରାୟତ୍ତ ବିଶାଖାପାଟଣା ଷ୍ଟିଲ ପ୍ଲାଣ୍ଟର, କଟକ ଛତ୍ର ବଜାରର ବିଶିଷ୍ଟ ବ୍ୟବସାୟୀ ସ୍ୱର୍ଗତ ବଂଶୀଧର ମହାନ୍ତି ଏ ଗାଁର। ପୁଣି ଏ ଗାଁର ଜୋଇଁ ଜ୍ଞାନପୀଠ ପୁରସ୍କାର ବିଜେତା ସ୍ୱର୍ଗତ ଗୋପୀନାଥ ମହାନ୍ତି। ଏ ଗାଁର ଦେବତା ନୃସିଂହନାଥ, ପ୍ରକାଣ୍ଡ ପାଚେରୀ ବେଢ଼ା, ଶୁଦ୍ଧ ସୁବର୍ଣ୍ଣର ମୂର୍ତ୍ତି। ଯଶୋଦା ସବୁବେଳେ ଜନ୍ମ ଗାଁର କଥା କହେ। କନ୍ଦରପୁର ପାରାଦ୍ୱୀପ ରାସ୍ତାରେ କଟକରୁ ପ୍ରାୟ ୧୫ ମାଇଲ୍ ଦୂର ପାଇକା ନଈ କୂଳର, ଏ ଗ୍ରାମର କୁଳୀନ, କରଣ ରଘୁନାଥ ଦାସଙ୍କ

ଧର୍ମପତ୍ନୀ ଅନ୍ନପୂର୍ଣ୍ଣାଙ୍କ ଅଷ୍ଟମ ଗର୍ଭରେ, ସପ୍ତମ ସନ୍ତାନ ଜନ୍ମର ବେଶ୍ କିଛି କାଳ ବ୍ୟବଧାନରେ ଶୁଭ କୁମାରୀ ଜନ୍ମ ହୋଇଥିଲା। ସାବିତ୍ରୀ ଅମାବାସ୍ୟା ଦୁଇଦିନ ପରେ, ସାଲ ୧୯୨୦ରେ। ଶ୍ରଦ୍ଧା ନାମ ତାରାମଣି। କୋଳ ପୋଛାଁ ବୋଲି ଅତି ଶ୍ରଦ୍ଧା ଓ ଗେଲବସରରେ ବିତିଥିଲା ବାଲ୍ୟ ଓ ଶୈଶବ। ବାପା, ବୋଉ, ଭାଇ, ଭଉଣୀମାନେ ସ୍ନେହରେ ଡାକୁଥିଲେ ତାରେଣୀ, ଭାଉଜମାନେ ଡାକୁଥିଲେ ତାର। ଜ୍ୟେଷ୍ଠ ଭାଇ ଢେର ବଡ଼ ଥିଲେ କନିଷ୍ଠା ଭଉଣୀ ଠାରୁ। ତାରାମଣିଙ୍କ ବିବାହ ବେଳକୁ ତିନିଜଣ ଭାଇ ଭଉଣୀଙ୍କର ଦେହାବସାନ ହୋଇ ସାରିଥିଲା ଅକାଳରେ। (ଜଣେ ଶୈଶବରେ, ଜଣେ ଭାଇ ଅବିବାହିତ ଚାକିରି ଆରମ୍ଭ ପରେ, ସବା ବଡ଼ ଭଉଣୀ ବିବାହର କିଛି ବର୍ଷ ପରେ, ଶାଶୁ ଘରେ)। ପିତାଙ୍କର ମଧ୍ୟ ସ୍ୱର୍ଗବାସ ହୋଇଥିଲା। ଥିଲେ ଚାକିରିଆ ବଡ଼ଭାଇ, କାଶୀନାଥ, ବଂଶୀଧର-ଯେଉଁମାନେ ଓଡ଼ିଶା ଗଡ଼ଜାତ ମାନଙ୍କରେ ଫରେଷ୍ଟ ରେଞ୍ଜର ଥିଲେ ଓ ଦ୍ୱାରିକାନାଥ, ଯିଏ ଟିନ୍‌ପ୍ଲେଟ କମ୍ପାନୀ, ଆଧୁନିକ ସହର ଟାଟାନଗରରେ ଚାକିରି କରୁଥିଲେ। ମଝିଆଁ ଭଉଣୀ କ୍ଷେତ୍ରମଣି କଟକ ନିକଟବର୍ତ୍ତୀ ବିରିବାଟୀ ଗ୍ରାମର ଗୋଲେଖ ଚନ୍ଦ୍ର ମହାନ୍ତିଙ୍କୁ ବିବାହ କରିଥିଲେ। ସେତେବେଳେ ଥିଲେ ମଝିଆଁ ଦେଇର ତିନୋଟି ସନ୍ତାନ, ଶରତ ଚନ୍ଦ୍ର, ବିଦ୍ୟୁଲତା, ଆଶାଲତା ଓ କେବଳ ବଡ଼ ଭାଇ କାଶୀନାଥଙ୍କର ଏକମାତ୍ର ସନ୍ତାନ ଶାନ୍ତିଲତା। ପରେ ଭାଇ ଦ୍ୱାରିକାନାଥଙ୍କର ହୋଇଥିଲେ କନ୍ୟା ମିନି (ସ୍ୱର୍ଣ୍ଣଲତା) ଓ ପୁଅ ପଞ୍ଚୁ (ଗିରିଜା ପ୍ରସାଦ)।

ତାରାମଣିର ପ୍ରିୟ, ସମବୟସ୍କା ଥିଲେ ମଝିଆ ଭାଉଜ (କେତକୀ ପ୍ରିୟା) ଯାହାଙ୍କୁ ସେ ସମ୍ବୋଧନ କରୁଥିଲା ନୂଆ ଭାଉଜ ଓ ତାଙ୍କଠାରୁ କେତେ କଥା ଶିଖିଥିଲା। କେତକୀ ପ୍ରିୟା ଥିଲେ ବିଦୂଷୀ, ସୁଗୁଣବତୀ ଓ କବି। ତାରାମଣିର ବିବାହର ତିନିବର୍ଷ ପରେ ଗୋଟିଏ କନ୍ୟା ସନ୍ତାନ ଜନ୍ମ କାଳୀନ ସମସ୍ୟାରେ ନୂଆ ଭାଉଜ ଓ ପରେ ତାଙ୍କ ଶିଶୁ କନ୍ୟାର ମୃତ୍ୟୁ ହୋଇଥିଲା। ଏହା ଥିଲା ତାରାମଣି ପାଇଁ ଏକାନ୍ତ ଦୁଃଖଦ। ବଂଶୀଧର ଭାଇ କିନ୍ତୁ ଦ୍ୱିତୀୟ ବିବାହ କରି ନଥିଲେ। ନୂଆ ଭାଉଜଙ୍କ ଲିଖିତ କବିତା ଖାତାକୁ ସମ୍ପଦ କରି ତାରାମଣି ଜୀବନର ଶେଷ ଅଙ୍କପର୍ଯ୍ୟନ୍ତ ତାଙ୍କର ଗୁଣଗାନ କରି ଆସିଛି।

ଗାଁ ସ୍କୁଲରେ ନାମଲେଖା ହୋଇଥିଲା। ନାଥମାଷ୍ଟ୍ରେ ଥିଲେ ସ୍ନେହୀ, ସେ ମଧ୍ୟ ଜାତକ ଦେଖୁଥିଲେ। କୁଆଡ଼େ ଭଲ ପାଠ ପଢୁଥିବାରୁ ଶିକ୍ଷକ ଓ ସ୍କୁଲ ଇନ୍‌ସପେକ୍ଟର ଖୁସୀ ଥିଲେ ତାରାମଣି ଉପରେ। ହେଲେ ସେ କାଳର ନିୟମ ଅନୁଯାୟୀ ଘରଯୋଗ୍ୟା ହେବା ପରେ, ଚତୁର୍ଥ ପଞ୍ଚମ ବେଳକୁ ପାଠରେ ଡୋରୀ ବନ୍ଧା ହୋଇଥିଲା।

ତିନି ଭାଉଜଙ୍କ ସ୍ନେହ, ଏକମାତ୍ର ଅଲିଅଳୀ ଝିଆରୀ ଶାନ୍ତି (ଯାହାର ନାମ ଓ ଚରିତ୍ର ଏକାପରି), ସାଙ୍ଗ ସାଥୀମାନଙ୍କ ଥଟ୍ଟା ଟାପରା, ହସଖୁସୀ, ରଜ, କୁଆଁର ପୁନେଇର ଅସରନ୍ତି ଆନନ୍ଦ ଦିନେ ଶେଷ ହେଲା ତାରାମଣି ଜୀବନରେ। ମାର୍ଚ୍ଚମାସ ୧୯୪୦ ମସିହାରେ ତାର ବିବାହ ହେଲା କଟକ ଜିଲ୍ଲା ସାଇଲୋ ଗୋବିନ୍ଦପୁର ଥାନା, ନୂଆଗାଁ ଶାସନ ଗ୍ରାମର ବନମାଳୀ ମହାନ୍ତିଙ୍କ ମଧ୍ୟମ ପୁତ୍ର ରାଜକିଶୋରଙ୍କ ସହିତ। ସେଇ ମଫସଲ ଦେବୀନଈ ପାଖ ଧୋୟା ଗାଁ ନୂଆଗାଁ ଶାସନରେ, ତା' ଅଜାଣତରେ ଦିନେ ତାରାମଣି ହୋଇ ଯାଇଥିଲା ଯଶୋଦା- ତା'ର ଚମ୍ପକ ବର୍ଣ୍ଣ କାଖକୁ ସତକୁ ସତ ତେଇଁ ପଡ଼ିଥିଲା କଳା କାହ୍ନୁ।

...୩

## ଦେବକୀର କଥା

ନୂଆଗାଁ ବନମାଳୀ ମହାନ୍ତି ଋଷି ପ୍ରତିମ, ମଣିଷ ପରି ମଣିଷ ଥିଲେ। ନାଁକୁ ଜମିଦାର। ଦେଶ ସ୍ୱାଧୀନ ହୋଇ ଜମିଦାରୀ ଉଚ୍ଛେଦ ପରେ ଭାଗରେ ପଡ଼ିଲା ନର୍ଅଭାଗରୁ ଭାଗେ, ଚାଷ ଜମି ଚାରି ଏକର ଓ ନାହା ଗାଡିଆ, ବାଉରୀ ଗାଡିଆ, କଣ୍ଡରା ଆମ୍ବତୋଟା ଏମିତି କିଛି ଇଜିମାଇଲି ସମ୍ପତ୍ତି। ତାରାମଣି କୁହେ ସେ କାଳରେ ଏତେ ସତମିଛ ବୁଝାବୁଝି, ପରଖ କରିବାର ସୁବିଧା ନଥିଲା। ରେଙ୍ଗର ଭାଇମାନେ ବୁଝି ନପାରି ସତ ଜମିଦାର ଭାବି ବାହାଘର କରିଦେଲେ ବନମାଳୀ ମହାନ୍ତିଙ୍କ ଘରେ, ଯଦିଓ ତାଙ୍କ ଆର୍ଥିକ ଅବସ୍ଥା ଅନେକ ରୟତଙ୍କ ଠାରୁ ନ୍ୟୂନ ଥିଲା।

ତାରାମଣିର ବିବାହର ଦେଢ଼ବର୍ଷ ପୂର୍ବରୁ ସାମାନ୍ୟ ବାଧକରେ ଶାଶୁ ବାଜମଣିଙ୍କର ସ୍ୱର୍ଗବାସ ହୋଇଥିଲା। ଦିଅର ନନ୍ଦକିଶୋର ଓ କନିଷ୍ଠା ସାନ ନଣନ୍ଦ ପାର୍ବତୀଙ୍କର ବିବାହ ହୋଇନଥିଲା। ଜ୍ୟେଷ୍ଠା ନଣନ୍ଦ ଚିତ୍ରଲେଖା, ତାଙ୍କର ବିବାହ ହୋଇଥିଲା କଟକ ପାଖ ବିରିବାଟୀ ଗ୍ରାମର ରଘୁନାଥ ମହାନ୍ତିଙ୍କ ସହ। ତାଙ୍କ ତଳ ଦେଢ଼ଶୁର ବୀରକିଶୋରଙ୍କର ବିବାହ ହୋଇଥିଲା କଟକ ପାଖ କାଠଯୋଡୀ କୂଳ ଗ୍ରାମ ଉରାଳୀର କୃଷ୍ଣଚରଣ ମହାନ୍ତିଙ୍କ ଜ୍ୟେଷ୍ଠକନ୍ୟା ଇନ୍ଦୁମତୀଙ୍କ ସହିତ ଓ ଶ୍ୱଶୁରଙ୍କ ଦେହାନ୍ତ ପରେ ତାଙ୍କ ଚାକିରିରେ ସେ ପୁରୀର ରାଧାକାନ୍ତ ମଠରେ ସୁପରଭାଇଜର ରୂପେ କାର୍ଯ୍ୟ କରୁଥିଲେ। ବୀରକିଶୋର ଥିଲେ ଅର୍ଥବାନ୍ ଓ ଘରର କର୍ତ୍ତୀର ଥିଲେ ଇନ୍ଦୁବାଳା। ସ୍ୱାମୀଙ୍କ ଉପର ନଣନ୍ଦ ସାରଳାଙ୍କର ବିବାହ ହୋଇଥିଲା ପଟିଆ ବାରଙ୍ଗ ରଘୁନାଥପୁରର ଜଗନ୍ନାଥ ପଟ୍ଟନାୟକଙ୍କ ସହ। ତାରାମଣି ଶୁଣିଥିଲା ସ୍ୱାମୀ ଓ ମଝିଆ ନଣନ୍ଦଙ୍କ ଭିତରେ ତଳଉପର ଭଉଣୀ ଭାଇ ରୂପେ ଥିଲା ଟିକେ ଅଧିକ ସ୍ନେହର ସଂପର୍କ।

ସାରଳା ଥିଲେ ବୁଦ୍ଧିମତୀ, ସ୍ୱାଭିମାନୀ, କର୍ତ୍ତବ୍ୟ ଓ ଧର୍ମ ପରାୟଣା । କେବେ ସ୍କୁଲ ନ ଯାଇ ସାନଭଉଣୀଙ୍କୁ ଗୃହଶିକ୍ଷକ ପଢ଼ାଇବା ବେଳେ ସେ ଦୂରରେ ଥାଇ ସୁଦ୍ଧା ପ୍ରୟୋଜନୀୟ ପାଠ ଓ ଗଣିତ ପଢ଼ି ନେଇଥିଲେ । ସେ ସବୁ ହୁଏତ ଯୋଗାଯୋଗ କଥା । ଯୋଗାଯୋଗର ବ୍ୟବସ୍ଥା ନଥାଇ, କଟକ ପାଖ, ଧୋୟୀ ହେଲେ ମଧ୍ୟ ଉର୍ବରା ଗ୍ରାମ ନୂଆଗାଁରୁ, ପଟିଆ, ଚନ୍ଦକା, ନନ୍ଦନକାନନ ବଣଜଙ୍ଗଲ ଘେରା, ସେ କାଳକୁ ସୁଦୂର ରଘୁନାଥପୁରରେ ଶାଶୁଘର ହେଲା ସାରଳାଙ୍କର । ନୂଆଗାଁ ଠାରୁ ଅନେକ ବଡ଼ଗାଁ ରଘୁନାଥପୁର । ହେଲେ ଏହାର ପ୍ରମୁଖ ବାସିନ୍ଦା ଥିଲେ ଶଅର (ଶବର ଶବ୍ଦର ଅପଭ୍ରଂଶ ହୁଏତ) । ଉଚ୍ଚଜାତି ବୋଇଲେ ଦୁଇ ବଂଶ ବ୍ରାହ୍ମଣ ଓ କେବଳ ଗୋଟିଏ ବଂଶ ପଟ୍ଟନାୟକ କରଣ । ସେମାନେ କେଇବର୍ଷ ପୂର୍ବରୁ ସେଠାକୁ ଉଠି ଆସିଥିଲେ ହୁଏତ । ସୁଦର୍ଶନ ପଟ୍ଟନାୟକ ଓ ରମ୍ଭା ଦେବୀଙ୍କର ଚାରି ପୁତ୍ର ସନ୍ତାନଙ୍କ ମଧ୍ୟରେ ଜଗନ୍ନାଥ ଥିଲେ କନିଷ୍ଠ । ସାରଳାଙ୍କ ବିବାହ ବେଳକୁ ଶାଶୁ ଶ୍ୱଶୁର, ଜ୍ୟେଷ୍ଠ ଦେଢ଼ଶୁର ଓ ତାଙ୍କ ପତ୍ନୀଙ୍କର ଦେହାନ୍ତ ହୋଇସାରିଥିଲା । ଥିଲେ ଦୁଇ ଦେଢ଼ଶୁର ବିଶ୍ୱନାଥ, କାଶୀନାଥ ଓ ଦୁଇ ବଡ଼ ଜାଆ । ବଡ଼ ଜାଆ (ବିଶ୍ୱନାଥଙ୍କ ପତ୍ନୀ)ଙ୍କର ଥିଲେ ଦୁଇ କନ୍ୟା ସୁନ୍ଦରମଣି ଓ କ୍ଷେତ୍ରମଣି । ମଝିଆଁ ଜାଆଙ୍କର ସନ୍ତାନ ସନ୍ତତି ନଥିଲେ । କିଛି ଦିନ ପରେ କ୍ଷେତ୍ରମଣିଙ୍କ ତଳକୁ ଆସିଲେ ଜ୍ୟୋତିଷଚନ୍ଦ୍ର । ସେ କିନ୍ତୁ ଅଳ୍ପ ଦିନ ଭିତରେ ମାତୃସ୍ନେହରୁ ବଞ୍ଚିତ ହେଲେ । ସେତେବେଳକୁ ସାରଳାଙ୍କର ପ୍ରଥମ ପୁତ୍ର ସନ୍ତାନ ଜନ୍ମ ହେବା ଅଳ୍ପ ଦିନ ପରେ ଆଖି ବୁଜି ଦେଇଥିଲା । ବଡ଼ ଜାଆଙ୍କ ଅକାଳ ଦେହତ୍ୟାଗ ପରେ ସାରଳା ଲାଳନପାଳନ କଲେ ଜ୍ୟୋତିଷ ଚନ୍ଦ୍ରଙ୍କୁ । ତା'ପରେ ତାଙ୍କ କୋଳ ମଣ୍ଡନ କରି ଆସିଥିଲେ ଦ୍ୱିତୀୟ ପୁତ୍ର ସନ୍ତାନ ଉମେଶ ଚନ୍ଦ୍ର ।

ସେ ଆଡ଼େ ବଡ଼ବାଇ ବୀରକିଶୋରଙ୍କର ପୁତ୍ରକଷ୍ଟ । ସାରଳାଙ୍କ ଝିଅ ବେଳୁ ଓ ବିବାହ ପରେ ସେ ଶୁଣନ୍ତି ଭାଉଜ ଇନ୍ଦୁବାଳାଙ୍କର ଅଦ୍ଭୁତ ରୋଗ । ଗୋଟିଏ ପରେ ଗୋଟିଏ ହୋଇ ଚାରୋଟି ମୃତ ପୁତ୍ର ସନ୍ତାନ ଜନ୍ମ ହୋଇଛନ୍ତି ତାଙ୍କର । ସେ କାଳରେ କି ଅବା ଚିକିତ୍ସା । ଭାଇ ହତାଶ । ପୁତ୍ର ବିନା ପୁତ୍ ନର୍କରୁ ଉଦ୍ଧାର କରିବ କିଏ ? ଗଲେ ବଡ଼ଦେଈ ଚିତ୍ରଲେଖାଙ୍କ ପାଖକୁ । ତାଙ୍କର ଗୋଟିଏ ପୁଅ ରଜନୀକାନ୍ତ । ଅନୁନୟ କଲେ, "ଦେଈ ! ଆଉ ଗୋଟିଏ ପୁଅ ହେଲେ ମୋତେ ଦେବୁ ।" ଚିତ୍ରଲେଖାଙ୍କର ଦ୍ୱିତୀୟ ସନ୍ତାନ କିନ୍ତୁ ହେଲା କନ୍ୟା, ଅନସୂୟା । ଏଣେ ଇନ୍ଦୁବାଳାଙ୍କର କେହି ଭାଇ ନାହାନ୍ତି, କେବଳ ଜଣେ ସାନ ଭଉଣୀ, ତିଳୋତ୍ତମା । ତିଳୋତ୍ତମାଙ୍କର ଦ୍ୱିତୀୟ ପୁତ୍ରକୁ ଆଣିବା ପାଇଁ ମନ ବଳେଇଲେ ଇନ୍ଦୁବାଳା । ପିତା, ତିନିଭାଇଙ୍କୁ ନେଇ ଯୌଥ ପରିବାର । ବୀରକିଶୋର ଅନୁଭବ କଲେ ରାଧାକାନ୍ତଙ୍କ

ଦୟିବୁ କୌଣସି ଭଉଣୀର ପୁଅକୁ ପୋଷ୍ୟପୁତ କଲେ, ମାମୁଙ୍କୁ ବାପା ଦାଦା ଓ ମାଉସୀକୁ ପିଉସୀ ବୋଲି ସମ୍ବୋଧନ କରିବ। ପୁଅ ତାଙ୍କର ହେଲେ ସୁଦ୍ଧା, ଭାଇଭଉଣୀ ସମସ୍ତେ ନିଜର ରକ୍ତ ବୋଲି ଭଲ ପାଇବେ। ଏଣୁ ବୀରକିଶୋର ଚଞ୍ଚକତା କଲେ ପତ୍ନୀଙ୍କ ସଙ୍ଗେ। କହିଲେ ଜ୍ୟୋତିଷ କହିଛନ୍ତି ପତ୍ନୀଙ୍କ ସାନ ଭଉଣୀର ସନ୍ତାନକୁ ପୋଷ୍ୟପୁତ୍ର କଲେ ତାଙ୍କ ଜୀବନକୁ ବିପଦ ଅଛି। ଇନ୍ଦୁବାଳା ବୁଝିଲେ ସ୍ୱାମୀଙ୍କର ଫିକର। ଏଣୁ ସାନ ଭଉଣୀର ତୃତୀୟ ପୁଅ ହେଲା ପରେ ମଧ୍ୟ ମନର ରାଗ ଅଭିମାନ ମନରେ ରଖି ନୀରବ ରହିଲେ। ଏଣେ ବୀରକିଶୋରଙ୍କର ଚିନ୍ତା କେଉଁ ଭଉଣୀର ଗର୍ଭରେ ଅଙ୍କୁରିତ ହେବ ତାଙ୍କ ପାଇଁ ଦାୟଦ !

ଦେଇର ଗର୍ଭସଞ୍ଚାରର କୌଣସି ଖବର ନାହିଁ। ଅନସୂୟାଙ୍କୁ ଚାରି ବର୍ଷ ଚାଲିଲା। ଅନୁଜା ସାରଳାଙ୍କ ଗର୍ଭ ସଞ୍ଚାରର ସମ୍ବାଦ ପାଇ ଆଶା ବାନ୍ଧିଲେ ବୀରକିଶୋର। ଉମେଶ ଚନ୍ଦ୍ରଙ୍କ ପରେ ଦ୍ୱିତୀୟ ପୁଅ ହେଲା ତାଙ୍କର, ସେମାନେ ନାମ ଦେଲେ ସରୋଜ କୁମାର। ହେଲେ ମାମୁଙ୍କ ମନୋଭାବ ଜାଣି ବଡ଼ବାପା ବିଶ୍ୱନାଥ କହିଲେ,- 'କାଶୀନାଥ ନିଃସନ୍ତାନ, ଜଗନ୍ନାଥର ଦ୍ୱିତୀୟ ପୁଅକୁ ପୁଅ କରୁ।' ତାହା ହିଁ ହେଲା, ବୀରକିଶୋର ନିରାଶ ହେଲେ। କେବେ ରାଧାକାନ୍ତ ମନୋବାଞ୍ଛା ପୂର୍ଣ୍ଣ କରିବେ ! ପୁଣି ଅପେକ୍ଷା।

ଜଗନ୍ନାଥ ଥିଲେ ବୁଦ୍ଧିମାନ୍, କର୍ମଠ, ଉଦ୍‌ଯୋଗୀ ପୁରୁଷ, ଏକାନ୍ତ କର୍ତ୍ତବ୍ୟ ପରାୟଣ। ପରବର୍ତ୍ତୀ କାଳରେ ଯୌଥ ପରିବାରର ସମସ୍ତ ଦାୟିତ୍ୱ ନିର୍ବାହ କରି, ଅଜସ୍ର ପରିଶ୍ରମ କରି ସେ ଦୁଇପୁଅ, ପୁତୁରା, ଝିଅମାନଙ୍କୁ ପାଠ ପଢ଼ାଇ ମଣିଷ କରିଥିଲେ, ଦୁଇ ଝିଆରୀଙ୍କୁ ବିବାହ ଦେଇ ଭଲମନ୍ଦ ବୁଝିଥିଲେ ଶେଷଯାଏ। ସେଥିରେ ଥିଲା ସାରଳାଙ୍କର ସ୍ୱତଃସ୍ଫୂର୍ତ୍ତ ଆନ୍ତରିକ ସହଯୋଗ। ଦେଢ଼ଶୁର ପୁର୍ନବିବାହ କରି ନଥାଇ, ସେ ଜ୍ୟୋତିଷ ଚନ୍ଦ୍ର ଓ ବଡ଼ ଦୁଇ ଭଉଣୀଙ୍କୁ କେବେ ମାତୃହରାର ଦୁଃଖ ଅନୁଭବ କରିବାର ଅବସର ଦେଇ ନଥିଲେ। ଜଗନ୍ନାଥ ତୃତୀୟ ଓ ପଞ୍ଚମ ଶ୍ରେଣୀରେ ଗାଁ ପାଖ ସ୍କୁଲରୁ ବୃତ୍ତି ପାଇ ପ୍ୟାରୀମୋହନ ଏକାଡ଼େମୀ, କଟକରେ ହାଇସ୍କୁଲରେ, ନାଁ ଲେଖାଇଥିଲେ। ହେଲେ ଅଭାବ ଓ କଟକରେ ରହିବା ପାଇଁ କେହି ବଂଧୁ, ପରିଚିତ ନ ଥିବା ଯୋଗୁଁ ୧୦, ୧୨ ମାଇଲ ବାଟ ପ୍ରତିଦିନ ବାରଙ୍ଗ ଛୋଟ ନଈ, କୂଆଖାଇ, କାଠଯୋଡ଼ି ପାରିହୋଇ ଚାଲି ଚାଲି ଗାଁରୁ କଟକ ସ୍କୁଲକୁ ଯିବା ଆସିବା କରୁଥିଲେ। ହେଲେ ଏତେ କଷ୍ଟ ଆଉ ସମ୍ଭବ ହେଲାନାହିଁ। ସମ୍ଭବତଃ ଦଶମ ଶ୍ରେଣୀରେ ଥିବାବେଳେ କେଉଁଦିନ, ଏକାଡ଼େମୀ ପାହାଚ ତାଙ୍କ ପାଇଁ ମରିଚୀକା ହୋଇଗଲା। ହେଲେ ତାଙ୍କର ବିଦ୍ୟା ଥିଲା, ଜ୍ଞାନ ଥିଲା, ଇଂରାଜୀ, ଓଡ଼ିଆ, ବ୍ୟାକରଣ, ଗଣିତ,

ସବୁଥିରେ ଥିଲା ମୂଳଦୁଆ ପକ୍କା । ସେଇ ହୋଇଥିଲା ଜୀବନରେ ବଣିଜ କରିବା ପାଇଁ ତାଙ୍କର ପୁଞ୍ଜି । ସରୋଜକୁମାରଙ୍କ ଜନ୍ମ ପରେ ସେ ଜୀବିକା ଖୋଜି ଖୋଜି ଯାଇ ପହଞ୍ଚିଲେ ସୁଦୂର କଳାହାଣ୍ଡି ଜିଲ୍ଲାର ରାମପୁର ମଦନପୁର ରାଜାଙ୍କ ପାଖରେ ଓ ନିଯୁକ୍ତ ହେଲେ ରାଜପୁତ୍ରମାନଙ୍କ ଗୃହ ଶିକ୍ଷକ ଭାବେ । ଉଆସ ପାଖରେ କେଉଁଠି ତାଙ୍କ ପାଇଁ ରହିବାର ବ୍ୟବସ୍ଥା ହୋଇଥିଲା ।

...୪

## କାହ୍ନୁର ଜନ୍ମ ଏବଂ ଭବିତବ୍ୟ

ଦିନ ଗଡି ଚାଲିଲା । ବୀର କିଶୋର ସମୁଦ୍ରକୂଳ ବାଲି ଜମି କିଣି ଲୋକ ଲଗାଇ ବିନା ଯତ୍ନରେ ବଢୁଥିବା ଝାଉଁ ଗଛ ଲଗାଇ, ଜାଳେଣି ପାଇଁ ୩/୪ ବର୍ଷ ପରେ ବିକ୍ରୀ କରି, ପୁଣି ସେଇ ଜମିରେ ଗଛ ଲଗାଇ-ଏହିପରି ଭାବେ ଅର୍ଥ ଅର୍ଜନ କରୁଥିଲେ । ଏହା ଭିତରେ ସାନଭାଇ, ଭଉଣୀଙ୍କୁ ବିବାହ ଦେଇ ସାରିବା ପରେ, ଗାଁରେ ଛୋଟ ହେଲେ ମଧ୍ୟ ୫ ବଖରା କୋଠାଘର ଓ ପ୍ରାୟ ପନ୍ଦର ଏକର ଜମି, ଅଧିକାଂଶ ପିତାଙ୍କ ନାମରେ କିଣି ସାରିଲେଣି । ମନରେ କିନ୍ତୁ ଅବଶୋଷ କିଏ ଦେଖିବ ଅବା ଭୋଗ କରିବ ଏସବୁ । ବନମାଳୀଙ୍କ ମନକୁ ମଧ୍ୟ ସଂଚରି ଯାଇଛି ବଡ଼ ପୁଅଙ୍କ ହୃଦୟର ଅକୁହା ବ୍ୟଥା । ସାରଳାଙ୍କ ଭାବନା ସେଇ ଋଷିତୁଲ୍ୟ, କୃଷ୍ଣଦେହ ଶୁଭ୍ର ଚରିତ୍ର, ସାରା ଗାଁରେ ଦେବତାତୁଲ୍ୟ ସମ୍ମାନିତ ବାପାଙ୍କ ପାଇଁ । ବୋଉ ଏତେ ଦିନ ହେଲା ଗତ ହୋଇ ଯାଇଛି, ବାପା ଏକା, ପାଖରେ ଲଡର ବଡ଼ର ହେବାକୁ କେହି ନାହିଁ ଏ ବୟସରେ । ଖବର ମିଳୁଛି ବାପା ମନମରା ହୋଇ ରହୁଛନ୍ତି ସବୁବେଳେ ।

ସରୋଜ କୁମାରର ଜନ୍ମ ଦୁଇ ବର୍ଷରୁ ବେଶୀ ହେବ ଅତିକ୍ରାନ୍ତ ହୋଇଗଲାଣି । ଏହି ସମୟରେ ହେଲା ସାରଳାଙ୍କର ଗର୍ଭସଂଚାର । ପତି ଜଗନ୍ନାଥଙ୍କୁ ଖବର ଯାଇଛି । ଦିନ ଗଣୁଛନ୍ତି ସାରଳା । ସନ୍ତାନ ଭୂମିଷ୍ଠ ହେବା ବାକିଅଛି ଅଳ୍ପ କେଇଦିନ । ସବୁ ସ୍ପଷ୍ଟ ମନେ ପଡ଼ିଯାଉଛି । ପଥର ଦେହରେ ନିହାଣ ମୁନରେ ଲେଖାଥିବା ପରି ମନେ ରହି ଯାଇଛି ସେ ଦୃଶ୍ୟ । ଦିନେ ସ୍ୱପ୍ନ ହେଲା ସାରଳାଙ୍କର । ମହାଦେବଙ୍କ ପରି ରୂପ, ବେଶ । ହାତରେ ସଜତୋଳା ପାଣି ଜଖାରୁଟିଏ ଆଣି ସରଳାଙ୍କୁ ଦେଲେ- "ମା । ତୁ ନେ । କିନ୍ତୁ ଏ ତୋର ନୁହେଁ । ତୋତେ ଆଉ ଜଣଙ୍କୁ ଦେଇ ଦେବାକୁ ହେବ ।" ଚାଉଁ କରି ନିଦ ଭାଙ୍ଗିଗଲା । କେଜାଣି କେବେ ଆସିବେ ପତି କଳାହାଣ୍ଡି ମଦନପୁରରୁ ! ଚାରି ପାଞ୍ଚ ଦିନ ପରେ ଏନ୍ତୁଡି ଘରକୁ ଗଲେ ସାରଳା । ମାଘ ଶୁକ୍ଳ ତୃତୀୟ, ସରସ୍ୱତୀ

ପୂଜା ଦୁଇଦିନ ବାକି ଅଛି, ବର୍ଷ ୧୯୪୬। ପରିଚାରିକା କହିଲା- "ପୁଅ ହୋଇଛି ମା !" ପ୍ରସବ ବେଦନାତ ସେପରି ଜଣାଗଲା ନାହିଁ। ସ୍ୱପ୍ନର ଦୃଶ୍ୟ ଜଳଜଳ ମନେ ପଡ଼ିଗଲା ସାରଳାଙ୍କର। ସେଇ ଏନ୍ତୁଡିଘରୁ ଚିଠି ଲେଖି ଦାସୀ ହାତରେ ଜଣେ ବିଶ୍ୱସ୍ତ ସେବକକୁ ଦିଆଇ, ଯିବାକୁ ନିର୍ଦ୍ଦେଶ ଦେଲେ ନୂଆଗାଁ ବନମାଳୀ ମହାନ୍ତିଙ୍କ ପାଖକୁ।

ଚିଠି ଆସିଛି ମଧ୍ୟମା କନ୍ୟା ସାରଳା ପାଖରୁ। ଚିଠି ଖୋଲିଲେ ବନମାଳୀ- ଧାଡିଏ ଲେଖା- "ବାପା, ପୁଅ ହୋଇଛି, ନବ ଯଦି, କଲ୍‌ଦି ଆସ-" ବସିବା ଠାରୁ ଉଠିଗଲେ ବନମାଳୀ। ଦେବୀ ନଈ ପାରି ହୋଇ କଇକଙ୍ଗା କନ୍ଦରପୁରରୁ ବସ୍ କଟକକୁ। ସେଠୁ ଟ୍ରେନ୍‌ରେ ବାରଙ୍ଗ। ବାରଙ୍ଗ ଷ୍ଟେସନରୁ ଚାଲି କରି ବିଶ୍ୱନାଥ ପଟ୍ଟନାୟକଙ୍କ ଉଚ୍ଚ ପିଣ୍ଡା ପଥର ଚାନ୍ଦିନୀ ତଳେ ପହଞ୍ଚିବା ବେଳକୁ ଦିନ ଗଡି ଆସିଲାଣି। ପିଣ୍ଡାରେ ବସିଛନ୍ତି ଦୁଇ ଭାଇ ବିଶ୍ୱନାଥ, କାଶୀନାଥ। ଜଗନ୍ନାଥକୁ ଚିଠି ଯାଇଛି। ଏଯାଏ କୌଣସି ଖବର ନାହିଁ। ଅନୁକର ଶ୍ୱଶୁର କ୍ଳାନ୍ତ ଅବସନ୍ନ, ମୁହଁରେ ମାଘ ମାସରେ ବି ଝାଳ କମିଯାଇଛି। ପ୍ରଣାମ କଣାଇ କହିଲେ ଭାଇ ଦୁହେଁ- "ତଳେ ଛିଡ଼ା ହୋଇ ରହିଲେ କାହିଁକି ମଉସା ! ଘରକୁ ଆସନ୍ତୁ। ପାଣି ଆଣୁଛୁ ପାଦ ଧୋଇ ଟିକେ ବସନ୍ତୁ।"

"ନାଇଁ ବାବୁ। ଗୋଟିଏ ଭିକ୍ଷା ମାଗିବାକୁ ଆସିଛି। ଦେବା ପାଇଁ ପ୍ରତିଶ୍ରୁତି ଦେଲେ ପିଣ୍ଡା ଉପରକୁ ଉଠିବି। ନ ହେଲେ ଏଇଠୁ ଫେରିଯିବି।"

ଅର୍ଥ ବୁଝିବା ପାଇଁ କୌଣସି କଷ୍ଟ କରିବାକୁ ହେଲାନାହିଁ ସେମାନଙ୍କୁ। ବନମାଳୀ ମହାନ୍ତି ଶୁଦ୍ଧ ଅଶ୍ୱପତିଙ୍କ ଚରିତ୍ର। ସମସ୍ତଙ୍କ ପୂଜ୍ୟ। ଦଣ୍ଡେ ରହି ଭାଇ ଦୁହେଁ କହିଲେ, "ପ୍ରତିଶ୍ରୁତି ଦଉଛୁ ମଉସା। ଉପରକୁ ଆସନ୍ତୁ।" ହାତଧରି ଉପରକୁ ନେଇ ଆସିଲେ ପିତୃତୁଲ୍ୟ ଅତିଥିଙ୍କୁ, ପିତୃହରା କାଶୀନାଥ। ଏମିତି ସେଦିନ ସାରଳାଙ୍କ ତୃତୀୟ ପୁତ୍ର ହୋଇଗଲା ବଡ଼ ମାମୁଙ୍କ କୁଳନନ୍ଦନ, କାହ୍ନୁ। ହେଲେ ବୀରକିଶୋରଙ୍କ ପୁଅ କାହ୍ନୁପାଇଁ, କିପରି ଭାତୃଜାୟା ତାରାମଣି ହେଲେ ଯଶୋଦା ?

...୫

## କାହ୍ନୁର ବାଳଲୀଳା

ଏକୋଇଶା ବେଳକୁ ଜଗନ୍ନାଥ କଳାହାଣ୍ଡିରୁ ପହଞ୍ଚି ଯାଇଥିଲେ। ତାଙ୍କ ଆସିବା ପୂର୍ବରେ ଯେ ଭାଇମାନେ ନିଷ୍ପତ୍ତି ନେଇ ସାରିଛନ୍ତି ସେଥିରେ କଅଣ ବା କରିବାର ଥିଲା ତାଙ୍କର। ମଦନପୁରରୁ ବାହାରିବା ପୂର୍ବରୁ ଖବର ପାଇ, ନିଜ ବୁଦ୍ଧିରେ ସାଙ୍ଗରେ ନେଇ ଆସିଥିଲେ ଗଉଡ ଘରର ବୟସ୍କା ଗରିବଘରର ଅବିବାହିତା ଝିଅଟିଏ, କୌଶଲ୍ୟା।

ସାରଳାଙ୍କ ଠାରୁ ପୁଅକୁ ଦୂରରେ ନରଖଲେ, କିପରି ପୁଅ ଯାଇ ନୂଆଗାଁରେ ରହିବ ! କୌଶଲ୍ୟା ପୁଅର ଯତ୍ନ ନେଲା। ଯେତେଦୂର ସମ୍ଭବ ପୁଅକୁ ଦୂରରେ ରଖାଗଲା ସାରଳାଙ୍କଠାରୁ।

ବୀରକିଶୋରଙ୍କ ନିର୍ଦ୍ଦେଶରେ ଶଗଡ଼ ବୋଝେଇ ଅନେକ ସାମଗ୍ରୀ ନେଇ କନିଷ୍ଠ ଭାଇ ନନ୍ଦକିଶୋର ଆସିଲେ, ସାଙ୍ଗରେ ଖଞ୍ଜାର ଅନେକ ଭାଇ ପୁତୁରା, ବ୍ରାହ୍ମଣ, ନାହାକ, ଭଣ୍ଡାରୀ ମାନଙ୍କୁ ନେଇ। ସାରଳା କହିଥିଲେ, "ପୁଅ ନାଁ ଗୋବିନ୍ଦ ଦେବ। ମଲାବେଳେ ଅନ୍ୟ ଦୁଇପୁଅ ଥିବେ। ହେଲେ ସେ ନଥିବ। ତାକୁ ଖୋଜିବି ମୁଁ। ପାପୀ ଅଜାମିଳ ପରି ଗୋବିନ୍ଦ ନାମ ଧରି ମୁଁ ମୋକ୍ଷ ହୋଇଯିବି।" ବଡ଼ ଶଳା ରେଞ୍ଜରମାନଙ୍କ ସାହାଯ୍ୟରେ ବଣେଇ ରାଜାଙ୍କର ଇଷ୍ଟେଟରେ ଫରେଷ୍ଟର ଚାକିରି ପାଇ ସେତେବେଳକୁ ବଣେଇ ଚାଲିଯାଇଥିଲେ ରାଜକିଶୋର। ଏକାକୀ ତାରାମଣି ଥିଲେ ଗାଁରେ। ନୂଆ ଗାଁରୁ ଖବର ଆସିଲା। ତାରାମଣିଙ୍କ ପ୍ରସ୍ତାବକୁ ଗ୍ରହଣ କରିଛନ୍ତି ବନମାଳୀ। ପୁଅର ଶ୍ରାଦ୍ଧା ନାମ ହେବ ଭାରତଭୂଷଣ, ଡାକ ନାମ 'ବାବୁଲା'। ବୀରକିଶୋରଙ୍କ ପୁଅ ପାଇଁ ଭାତୃଜାୟା କାହିଁକି କଲେ ନାମ କରଣ ! ଜଗନ୍ନାଥ ଶୁଣିଥିଲେ ଇନ୍ଦୁବାଳାଙ୍କର ବିଶେଷ ଆଗ୍ରହ ନାହିଁ ଏ ବ୍ୟବସ୍ଥାରେ। ୫୬ ବର୍ଷ ପରେ ଦେହତ୍ୟାଗ ବେଳେ ଗୋବିନ୍ଦକୁ ଖୋଜି ନଥିଲେ ସାରଳା-ହେଲେ ଅନ୍ୟ ଦୁଇପୁଅ ମଧ୍ୟ ନଥିଲେ ପାଖରେ। ବଡ଼ପୁଅ ଉମେଶ ଚନ୍ଦ୍ରଙ୍କ ପରିବାର ଆମେରିକାରେ। ଏପରିକି ତାଙ୍କୁ ଜଖ ପରି ଜଗି ରହିଥିବା ମଝିଆଁ ପୁଅ ସରୋଜ କୁମାର ଦୁଇଦିନ ପାଇଁ ଝିଅକୁ ନେଇ ତା ପାଠପଢ଼ା କାମରେ ବାହାରକୁ ଯାଇଥିବା ବେଳେ ବିନାରୋଗରେ ଆଦରର ମଝିଆଁ ବୋହୂ ଇଲା କୋଳରେ, ସେ ହଠାତ୍ ସୁଖନିଦ୍ରା, ଚିରନିଦ୍ରା ବରଣ କରିନେଲେ। ହେଲେ ତାଙ୍କ କଥା ଅନୁଯାୟୀ ସାନପୁଅର ପରିଚୟ ଥିଲା ରଘୁନାଥପୁର ଓ ଜଗନ୍ନାଥଙ୍କ ସମସ୍ତ ସମ୍ପର୍କୀୟଙ୍କ ପାଖରେ 'ଗୋବିନ୍ଦ'। ସାର୍ଟିଫିକେଟ୍‌ରେ ଭାରତଭୂଷଣ ଓ ନୂଆଗାଁର ସମସ୍ତ ସମ୍ପର୍କୀୟଙ୍କ ପାଇଁ 'ବାବୁଲା'।

ଏକୋଇଶାର ଉତ୍ସବ ଶେଷ ହେଲା। ଫେରିଗଲେ ନୂଆଗାଁର ଅତିଥିମାନେ। କୌଶଲ୍ୟା ଜିମା ପୁଅ ରହିଲା। ଜଗନ୍ନାଥ ମଧ୍ୟ ଫେରିଗଲେ ଚାକିରି ସ୍ଥଳକୁ। (ଅବଶ୍ୟ ଅଳ୍ପଦିନ ପରେ ରାଜାଙ୍କୁ ବିଦାୟ ମାଗି ଆସି ବାରଙ୍ଗ କାଚ କାରଖାନାରେ ଚାକିରି କଲେ ଓ ପରେ ପରେ ୧୯୫୨/୫୩ ମସିହା ବେଳକୁ ପୁତୁରା, ପୁଅଝିଅମାନଙ୍କର ପଢ଼ାପଢ଼ିର ସୁବିଧା ହେବ ବୋଲି ଖୋଜି ଖୋଜି ଚାକିରି କଲେ କଟକ ମ୍ୟୁନିସିପାଲଟିରେ।) ଚାହୁଁ ଚାହୁଁ ବର୍ଷ ପୂରିବା ସମୟ ହେଲା। ନୂଆଗାଁକୁ ଆସିଲେ ବୀରକିଶୋର, ରାଜକିଶୋର ଓ ଅନ୍ୟ କେତେକ ବନ୍ଧୁବାନ୍ଧବ। ସାରଳା

ଗଲେ ପୁଅ କୌଶଲ୍ୟାକୁ ନେଇ। ଜନ୍ମଦିନ ଉତ୍ସବ, ପାଲା, ଭୋଜିଭାତ, ଲୁଗାପଟା, ହସଖୁସୀ ଶେଷହେଲା। ଏକାକିନୀ ଫେରିଲେ ସାରଳା।

କୌଶଲ୍ୟା ରହିଲା ଗୋବିନ୍ଦକୁ ନେଇ ନୂଆଗାଁରେ। ତାକୁ କୁହା ହୋଇଥିଲା ପାଟିଖୋଲିଲେ ପୁଅକୁ ଶିଖାଇବ। କୌଶଲ୍ୟାକୁ 'କୋଶଲା ବୋଉ' ଡାକିବ, ହେଲେ ଇନ୍ଦୁବାଳାଙ୍କୁ 'ବୋଉ' ବୋଲି ଡାକିବା ଶିଖାଇବ। ସାରଳା ଓ ବୀରକିଶୋରଙ୍କର ଆଶା ଥିଲା ପୁଅ ଇନ୍ଦୁବାଳାଙ୍କୁ ଆଦରିଗଲେ କୌଶଲ୍ୟା ଫେରିଯିବ ରଘୁନାଥପୁର। ହେଲେ ଚାରି ଚାରିଟା ମୃତ ପୁତ୍ର ଜନ୍ମ ଦେଇଥିବା ନାରୀର ମନ କେମିତି ଶୁଖି ଯାଇଥିଲା। ପୁଣି ସେ ଭୁଲି ପାରି ନଥିଲେ ସାନଭଉଣୀ ତିଳୋତ୍ତମାର ପୁଅକୁ ଆଣିବା ଇଚ୍ଛା ପ୍ରକାଶ କରିଥିବା ବେଳେ ସ୍ୱାମୀଙ୍କର ମନଫନ୍ଦା ଜ୍ୟୋତିଷର ବାଣୀ, ଯାହା ସେ ମୋଟେ ବିଶ୍ୱାସ କରି ପାରିନଥିଲେ। ପୁଅ ପାଇଁ ଇନ୍ଦୁବାଳାଙ୍କର ନଥିଲା ଆନନ୍ଦ ବା ଆଗ୍ରହ। କୌଶଲ୍ୟା ନିତ୍ୟକର୍ମ, ଭୋଜନ ବା ଅନ୍ୟ କିଛି ପାଇଁ ପୁଅକୁ ଛାଡ଼ିଗଲେ, ଯଦି ପୁଅ କାନ୍ଦୁଥିଲା, ତାରାମଣି ପୁଅକୁ ଆଦର ମମତା ଦେଇ ଶାନ୍ତ, ଖୁସି କରାଉଥିଲା। ଏ ପ୍ରକାର ଅବସ୍ଥାରେ କୌଶଲ୍ୟାକୁ ନୂଆଗାଁରେ ଅନିର୍ଦ୍ଦିଷ୍ଟ କାଳ ରହିବାକୁ ଅଡୁଆ ଲାଗିଲା। ଆଗରୁ କହି, ଖବର ଦେଇ କେଇମାସ ପରେ ପୁଅକୁ ନେଇ ରଘୁନାଥପୁର ଫେରିଗଲା କୌଶଲ୍ୟା।

ରଘୁନାଥପୁରକୁ ଫେରି ଆସିଥାଏ ଗୋବିନ୍ଦ। ଦିନ ଗଡ଼ିଯାଏ। ଦୁଇ ବର୍ଷ ପୂରିବା ହେଲାଣି ଚାରିପାଞ୍ଚ ମାସ। ଶ୍ରାବଣ ମାସ, ବର୍ଷା କାଳ। ଏ ସମୟରେ ଘଟିଲା ଏକ ଅଘଟଣ। ଖଞ୍ଜା ଭିତର ଓଦାମାଟି ଖସଡା ପିଣ୍ଡାରେ ଦଉଡି ଆସୁ ଆସୁ ଗୋଡ଼ ଖସିଗଲା ଗୋବିନ୍ଦର। ପଡ଼ିଲା ଯାଇ କାଛିନୀ ଭଙ୍ଗା ଭରା କୂଅ ଭିତରେ। ଅଳ୍ପ ଦୂରରେ କୁଲାରେ ଚାଉଳ ପାଛୁଡୁ ଥିଲା କୌଶଲ୍ୟା। ବିଜୁଳି ବେଗରେ ଦଉଡ଼ି ଆସି ଡେଇଁଲା ଭରା କୂଅ ଭିତରକୁ। ପାହାଡି ରାଇଜର ଝିଅ, ପାଣିରେ ବୁଡ଼ି ଗୋବିନ୍ଦକୁ ଉଠେଇ କୂଅର ଦୁଇ ନନ୍ଦରେ ପାଦରଖି, ପୁଅକୁ ପାଣି ଉପରକୁ ଉଠାଇ ଧରି ରହିଲା। ଚହଳ ପଡ଼ିଗଲା ସାଙ୍ଗେ ସାଙ୍ଗେ। ଜଗନ୍ନାଥ ଥା'ନ୍ତି ଗାଁରେ। ଲୋକେ କମା ହୋଇଗଲେ କୂଅକୁ ଘେରି, ଶୀଘ୍ର ଗୋଟିଏ ଶିକା କରି ତଳକୁ ପକାଇଲେ। କୌଶଲ୍ୟା ସେଥିରେ ପୁଅକୁ ଥୋଇ ଦେଲା ଓ ଲୋକେ ଉଠେଇ ଆଣିଲେ। ସେଦିନ ସତକୁ ସତ କୌଶଲ୍ୟା ପାଲଟିଗଲା କୌଶଲ୍ୟା ବୋଉ। (ଅଳ୍ପ ଦିନ ପରେ ଜନ୍ମ ହେଲା ଟିକି (ଗୋଲାପ) ଓ ତାର ପ୍ରାୟ ଅଢେଇ ବର୍ଷ ପରେ କୁନି (ପ୍ରମୋଦିନୀ)। ସେମାନଙ୍କର ବି ସିଏ ହୋଇଥିଲା କୌଶଲ୍ୟା ବୋଉ। (ଜଗନ୍ନାଥ ୧୯୫୩ ମସିହା ସୁଦ୍ଧା ଝିଆରୀ ସୁନ୍ଦରୀ ଓ କ୍ଷେତ୍ରମଣିଙ୍କର ବିବାହ ଦେଇ ସାରି, ପୁତୁରା ପୁଅଝିଅଙ୍କୁ ନେଇ କଟକ,

ପିଠାପୁରରେ ଜାଗା କିଣି, ଘର ତିଆରି କରି ରହିବା ପରେ, କୌଶଲ୍ୟା ଗାଁରେ ଏକା ହୋଇଗଲା। ଦିନେ କେଜାଣି କାହିଁକି କାହାରିକୁ କିଛି ନ ଜଣାଇ ସେ କୁଆଡ଼େ ଚାଲିଗଲା। (ଗୋବିନ୍ଦ କଟକରେ ନଥିବା ହେତୁ ତା'ର ମନେ ନାହିଁ ସେ ଦିନ ବା ତାରିଖ। ହେଲେ ଏବେବି ଉଣେଇ ଷାଠିଏ ବୟସରେ ମନ ତା'ର ବେଳେ ବେଳେ ଖୋଜିବୁଲେ କୌଶଲ୍ୟା ବୋଉକୁ।)

ଆଉ କେଇ ଦିନରେ ତିନି ବର୍ଷ ପୂରିବ ଗୋବିନ୍ଦକୁ। ଏହା ମଧ୍ୟରେ ସାରଳାଙ୍କ କୋଳକୁ ଆସି ସାରିଛି ପ୍ରଥମ କନ୍ୟା ଗୋଲାପ। ଗୋବିନ୍ଦ ଏବେ ନିଜ କାମ ନିଜେ କରି ପାରୁଛି। ସାରଳା କି କୌଶଲ୍ୟାଙ୍କ ଉପରେ ବିଶେଷ ନିର୍ଭର କରୁନାହିଁ। ବୀରକିଶୋରଙ୍କ କଥାରେ ଗୋବିନ୍ଦକୁ ନେଇ କୌଶଲ୍ୟା ନୂଆଗାଁ ଗଲେ। ବେଶି ଅସୁବିଧା ନାହିଁ। ଦରକାର ପଡ଼ିଲେ ତାରାମଣି ଗୋବିନ୍ଦର ଯତ୍ନ ନେଉଛନ୍ତି। ଇନ୍ଦୁବାଳା ତଥାପି ଉଦାସୀନ। ବୀରକିଶୋରଙ୍କ ସମ୍ମତିରେ କୌଶଲ୍ୟା ଫେରିଗଲା ରଘୁନାଥପୁର। ଇନ୍ଦୁବାଳାଙ୍କ ଅଦ୍ଭୁତ ବ୍ୟବହାର ଦେଖି ବୀରକିଶୋର ଭାତୃଜାୟାଙ୍କୁ କହିଲେ- "ସେଥିରେ କିଛି ଯାଏ ଆସେ ନାହିଁ। ବାବୁଲାକୁ ଶିଖାଅ, ତୁମକୁ ବୋଉ ଡାକୁ, ଇନ୍ଦୁବାଳାକୁ ଡାକୁ ଆବୋଉ।" 'ଆବୋଉ' କଟକ କଟକ ଜିଲ୍ଲାର ଗାଁ ମାନଙ୍କରେ 'ବଡ଼ବୋଉ'ର ସମ-ଅର୍ଥକ ସମ୍ବୋଧନ ଥିଲା।

ଅଳ୍ପଦିନ ଭିତରେ ରାଜକିଶୋର ରାଉରକେଲା (ଜଙ୍କ୍ସନ୍)କୁ ବଦଳି ହୋଇଆସିଲେ। ସେତେବେଳେ ପୁରୀ ହାଓଡ଼ା ପାସେଞ୍ଜରରେ ଖଡଗପୁରରେ ଗାଡ଼ି ବଦଳ କରି ହାଓଡା ନାଗପୁର ପାସେଞ୍ଜରରେ ଯାଇ ରାଉରକେଲାରେ ପହଞ୍ଚିବାକୁ ପାଖାପାଖି ୨୦/୨୨ ଘଣ୍ଟା ଲାଗୁଥିଲା। ଏହା ମଧ୍ୟରେ ରାଜକିଶୋରଙ୍କ ତଳଭାଇ ନନ୍ଦକିଶୋରଙ୍କ ବିବାହ ହେଲା ବଡ଼ମୂଳେଇର ଘନଶ୍ୟାମ କାନୁନ୍‌ଗୋଙ୍କ ଦ୍ୱିତୀୟା କନ୍ୟା ରତ୍ନମଣିଙ୍କ ସହିତ। ତା' ପୂର୍ବରୁ କନିଷ୍ଠା ଭଗିନୀ ପାର୍ବତୀର ବିବାହ ବାଗଲପୁର ନିକଟବର୍ତ୍ତୀ କୃତ୍ତିବାସ ପାଟଣାରେ ବାଳକୃଷ୍ଣ ଦାସଙ୍କ ସହ ହୋଇଯାଇଥିଲା। ରାଜକିଶୋର ଗାଁକୁ ଆସିଲେ। କିଛିଦିନ ରହି ଫେରିବା ବେଳେ ବାପା ଓ ପତ୍ନୀକୁ ନେଇ ରାଉରକେଲା ଯିବାକୁ ଚାହିଁଲେ। ତାରାମଣି ଦେଢ଼ଶୁରଙ୍କ ଅନୁମତି ନେଇ ବାବୁଲାକୁ ସାଙ୍ଗରେ ନେଇଗଲେ। ସେଠାରେ ଜେଜେ, ତାରାମଣି, ରାଜକିଶୋରଙ୍କ ସହ ପ୍ରାୟ ୪/୫ ମାସ ରହିଲା ବାବୁଲା। ତା' ଭିତରେ ପୁଅ କିପରି ଅଛି ଦେଖିବା ପାଇଁ ଶ୍ୱଶୁରଙ୍କୁ ସାକ୍ଷାତ କରିବା ବାହାନାରେ ଜଗନ୍ନାଥ ରାଉରକେଲା ଗଲେ ଓ ଆଶ୍ୱସ୍ତ ହୋଇ ଫେରି ଆସିଲେ। ଏହା ମଧ୍ୟରେ ତାରାମଣିଙ୍କ ତିନି ବଡ଼ବାଇଙ୍କ ଭିତରୁ ବଡ଼ଭାଇ କାଶୀନାଥଙ୍କ ହଠାତ୍ ଦେହାନ୍ତ ହୋଇଯାଇଥିଲା-ମରିଆଁ

ଭାଇ ବଂଶୀଧର ପାଲଲହଡ଼ାରେ ରେଞ୍ଜର ଥିଲେ। ସାନ (ବଡ଼) ଭାଇ ଦ୍ୱାରିକାନାଥ (ଯାହାଙ୍କ ମନରେ କନିଷ୍ଠା ଭଉଣୀ ପାଇଁ ଥିଲା ଟିକେ ଅଧିକ ଭଲ ପାଇବା) ଚାକିରି କରୁଥିଲେ ଜାମଶେଦ୍‌ପୁରରେ। ସେ ତାରାମଣି ଓ ବାବୁଲାକୁ କିଛିଦିନ ପାଇଁ ବୁଲେଇ ନେଇଗଲେ ଜାମଶେଦ୍‌ପୁର। ଏହିପରି ପ୍ରାୟ ୫ ମାସ ରହି, ତାରାମଣି ଶ୍ୱଶୁର ଓ ବାବୁଲାକୁ ନେଇ ଗାଁକୁ ଫେରିଗଲେ।

ସେତେବେଳେ ସେ ଥିଲେ ଅନ୍ତଃସତ୍ତ୍ୱା। ଯଥା ସମୟରେ କଟକରେ ବନ୍ଧୁଙ୍କ ଘରେ ରହି ପୁଅଟିଏ ହୋଇଥିଲା ତାଙ୍କର। ହେଲେ ଦୈବଯୋଗ-ପୁଅକୁ ମାସେ ପୁରୁଣୁ ତାଙ୍କୁ ହେଲା ବିସୂଚିକା ବସନ୍ତ, ଭୟଙ୍କର। ମାସେ କାଳ ଭୋଗିଲେ। ମା' ଠାରୁ ପୁଅ ଅଲଗା ରହି କଣ ଅସୁବିଧା ହେଲା କେଜାଣି, ଦିନେ ଆଖି ବୁଜି ଦେଲା।

ବାବୁଲା ଇନ୍ଦୁବାଳାଙ୍କ ପାଖରେ ନଥାଇ କଟକରେ ଥାଏ। ସଂପୂର୍ଣ୍ଣ ଆରୋଗ୍ୟ ହେବା ପରେ ପୁତ୍ରଶୋକଅଧୀରା ତାରାମଣି ବାବୁଲାକୁ ନେଇ ସବାରିରେ ଫେରିଲା ନୂଆଗାଁ। ଅଳ୍ପ ଦିନରେ ଭଉଣୀର ଦୁଃଖରେ ବିଚଳିତ ଦ୍ୱାରିକାନାଥ ଆସି ତାରାମଣି ଓ ବାବୁଲାକୁ ବୋଧପୁର ନେଇଗଲେ। ନୂଆଗାଁରେ ଏବେ ଇନ୍ଦୁବାଳାଙ୍କ ସହିତ ଥାନ୍ତି ରତ୍ନମଣି। ଜେଜେ, ଦାଦା (ନନ୍ଦକିଶୋର) ମଧ୍ୟ ଅନେକ ଆଦର କରନ୍ତି। ବାବୁଲାକୁ ଏବେ ଆଉ ଅସୁବିଧା ନାହିଁ ନୂଆଗାଁରେ। ଏଣୁ ପ୍ରାୟ ୧୫ ଦିନ ବୋଧପୁରରେ ରଖି ବାବୁଲାକୁ ନୂଆଗାଁରେ ଛାଡ଼ି ଦେଇଗଲେ ଦ୍ୱାରିକାନାଥ। ଚାରିବର୍ଷ ପୂରିଲା ପାଙ୍ଗେ ପାଙ୍ଗେ ବିଦ୍ୟାରମ୍ଭ ହେଲା ଗାଁ ମଦନମାଷ୍ଟ୍ରଙ୍କ ପାଖରେ। ଅଳ୍ପ କେତେଦିନ ପରେ ବୀରକିଶୋର ଇନ୍ଦୁବାଳା, ବାବୁଲାକୁ ନେଇ ପୁରୀ ଚୂଡ଼ଙ୍ଗସାହି ବସାକୁ ଗଲେ। ବାବୁଲାର ନାଁ ଲେଖାହେଲା ସିଧାସଳଖ ଦ୍ୱିତୀୟ ଶ୍ରେଣୀରେ ମାର୍କଣ୍ଡେଶ୍ୱର ସାହି ସ୍କୁଲରେ। ପ୍ରାକୃତିକ ପିତାଙ୍କ ପରି ବିଦ୍ୟାରେ ବିଚକ୍ଷଣ ଜଣା ପଡୁଥାଏ ବାବୁଲା। ହେଲେ ପରିବେଶ ଥାଏ ଉଦାସ ଉଦାସ।

ବୀରକିଶୋର ସେହି ଚୂଡଙ୍ଗ ସାହିରେ, ପ୍ରାୟ ୭୦ ଡିସିମିଲ ଜମି ଉପରେ ଚାରିବଖରା ଥିବା ଘରଟିଏ କିଣି, ପ୍ରୟୋଜନୀୟ ମରାମତି କରି ନିଜଘରକୁ ଉଠି ଗଲେ। ତାଙ୍କୁ ମଠ କାମରେ ଅନେକ ସମୟରେ ପାରଳାଖେମୁଣ୍ଡି (ଯେଉଁଠାରେ ମୁଖ୍ୟ ରାଧାକାନ୍ତ ମଠ ଅଛି) ଯିବାକୁ ପଡୁଥାଏ। ସେ ମଧ୍ୟ ମଠରେ ବେଶୀ ସମୟ ରହୁଥାନ୍ତି। ତାଙ୍କ ମନରେ ସବୁବେଳେ ଭାବନା ଇନ୍ଦୁବାଳା ପୁଅର ଉପଯୁକ୍ତ ଯତ୍ନ ନେଉଛନ୍ତି ତ ? ପ୍ରତି ୪/୫ ମାସରେ ଜଗନ୍ନାଥ, ଝିଆରୀ, ଝିଅମାନଙ୍କ ସହ ଆସି ପୁଅକୁ ଦେଖି ଯାଉଥାନ୍ତି। ସ୍କୁଲ ଲମ୍ବା ଛୁଟୀ ହେଲେ ଗୋବିନ୍ଦକୁ ନେଇଯାନ୍ତି ରଘୁନାଥପୁର। ଏହିପରି ଭାବେ ଦୁଇବର୍ଷ ବିତିଗଲା। ସାତ ବର୍ଷ ପୂରିବାର ଜନ୍ମ ଦିନ

ଗଲା ୧୯୫୩ ମସିହା ଫେବୃୟାରୀରେ। ବାର୍ଷିକ ପରୀକ୍ଷା କେଇଦିନ ଅଛି। କଅଣ ମନ ହେଲା କେଜାଣି ବାବୁଲା ରାଜକିଶୋରଙ୍କୁ ପୋଷ୍ଟ କାର୍ଡରେ ଚିଠିଖଣ୍ଡେ ଲେଖି ପଠାଇଲା। "ମୋତେ ନେଇଯାନ୍ତୁ। ମୋତେ ରାଉରକେଲାରେ ପଢ଼ିବାକୁ ଇଚ୍ଛା ହେଉଛି।"

ରାଜକିଶୋର ସଙ୍ଗେ ସଙ୍ଗେ ଉତ୍ତରଦେଲେ- ବାବୁଲାକୁ ନୁହେଁ, ବଡ଼ ଭାଇଙ୍କୁ। "ଭାଇ, ଆପଣତ ମଠ କାମରେ ବ୍ୟସ୍ତ ରହି ବାବୁଲାର ପଢ଼ାପଢ଼ି ବୁଝି ପାରୁ ନଥିବେ। ଯଦି ଚାହିଁବେ ମୁଁ ତାକୁ ରାଉରକେଲାରେ ଆଣି ପାଠ ପଢ଼ା କଥା ବୁଝନ୍ତି।" ମାଟ୍ରିକ୍ ପାସ୍ କରି ନଥିଲେ ମଧ୍ୟ ଛଅ ଭାଇଭଉଣୀଙ୍କ ଭିତରେ ସବୁଠୁ ବେଶୀ ପାଠ ପଢ଼ିଥିଲେ ରାଜକିଶୋର। ବୀରକିଶୋର ହୁଏତ ଭାବିଲେ, ଇନ୍ଦୁବାଳାଙ୍କ ଉଦାସ ସ୍ୱଭାବ ଯୋଗୁଁ ତାଙ୍କ ମନ ସବୁବେଳେ ଚିନ୍ତାକୁଳ ରହୁଛି। ହାତୀ ବନସ୍ତରେ ରହିଲେ ବି ରାଜାଙ୍କର। ପିଲାଟା ଆନନ୍ଦରେ ରହୁ। ତାଙ୍କର ଯୌଥ ଏକାନ୍ନବର୍ତ୍ତୀ ପରିବାର। ଭାଇ, ଭଉଣୀ, ବାପା ସମସ୍ତଙ୍କର ବିଶ୍ୱାସ ଓ ଶ୍ରଦ୍ଧା ତାଙ୍କ ଉପରେ। ରାଜୁ ଯଦି ନିଜ ଆଡୁ କହୁଛି- ଭଲକଥା। ରାଜୁ ପାଖରେ ରହିଲେ ବି ପୁଅ ତାଙ୍କର ହିଁ ହୋଇ ରହିବ।

ବୀରକିଶୋରଙ୍କ ସମ୍ମତିପତ୍ର ପାଇ ରାଜକିଶୋର ଜୁନ ମାସ ରଜ ପରେ ଆସିଲେ। ଗ୍ରୀଷ୍ମ ଛୁଟୀରେ ବାବୁଲା ବଡ଼ପିଉସୀ (ମାଉସୀ)ଙ୍କ ଘର ବିରିବାଟୀ ହୋଇ ନୂଆଗାଁ ଯାଇଥିଲା। ସେଠାରୁ କଟକ ଆସିଲା ବଡ଼ଭଉଣୀ (ବିଶ୍ୱନାଥଙ୍କ ସାନଝିଅ) କ୍ଷେତ୍ରମଣିଙ୍କ ବିବାହ ପାଇଁ। ରଘୁନାଥପୁରରୁ କୌଶଲ୍ୟା ବୋଉ ମଧ୍ୟ ଆସିଥିଲା। ସବୁ ବିଭାଘର, ବନ୍ଧୁ ଘର ବୁଲା ଆନନ୍ଦ ମଉଜ ପରେ ରାଜକିଶୋର ବାବୁଲାକୁ ନେଇ ରାଉରକେଲା ଯିବାପାଇଁ ଧରିଲେ ପୁରୀ ହାଓଡା ପାସେଞ୍ଜର।

ଜୀବନର ପ୍ରଥମ ଅଙ୍କ ଶେଷ ହେଲା ବାବୁଲାର। ସେ ଏବେ ଯାଉଛି ନିରବରେ ତାକୁ ମନଖୋଲି ପ୍ରାଣଦେଇ ଭଲ ପାଉଥିବା ମଣିଷଟିଏ ପାଖକୁ। କାହ୍ନୁ ଏଣିକି ବଢ଼ିବ ଯଶୋଦାର କୋଳରେ।

# ଦ୍ୱିତୀୟ ଅଙ୍କ

## ସମୟର ନଈ ଯାଏ ବହି

**ଯଶୋଦାର ଜୀବନ :**

ବୋଧପୁର ବଡ଼ ଗାଁ, ମର୍ଯ୍ୟାଦାବନ୍ତ ଗାଁ, ଅନେକ ଦୂରକୁ ବ୍ୟାପି ଯାଇଛି ତା'ର ପରିଚୟର ସୁରଭି। ଗୋଟିଏ ଲମ୍ବା ରାସ୍ତା ଗାଁ ମଝିରେ ମାଇଲିଏରୁ ବେଶୀ ହେବ। କର ଦେଇ ବହିଯାଇଛି ପାଇକା ନଈ, ମହାନଦୀର ଶାଖା, ଆଗପଟୁ ବନ୍ଧା ହୋଇଥିବାରୁ ବେଶୀ ପାଣି ନଥାଏ। ହେଲେ, ବହିଯାଇଛି ପୁରୁଷେ ଗଭୀର ନୀଳ ଜଳଧାରଟିଏ ଗାଁକୁ ଲାଗି। ବୋଧପୁର ଲୋକଙ୍କ ବ୍ୟବହାର ପାଇଁ ପ୍ରକୃତିର ଉପହାର। ଅନ୍ନପୂର୍ଣ୍ଣା, ରଘୁନାଥ ଦାସଙ୍କ ପିଲାମାନେ ଅଦ୍ଭୁତ ଭାବେ ରୂପମୟ। ଯାହା ବାବୁଲା ଦେଖିଛି, ମଝିଆଁ ମାମୁ ବଂଶୀଧର, ମାଉସୀ କ୍ଷେତ୍ରମଣି ଓ ତାରାମଣି ସମସ୍ତେ ଚମ୍ପକବର୍ଣ୍ଣ, ସବୁ ଅବୟବ ଶିଳ୍ପୀଟିଏ ଶ୍ରଦ୍ଧାରେ ଗଢ଼ିଥିବା ପରି। ସାନ ମାମୁ ଦ୍ୱାରିକାନାଥଙ୍କ ବର୍ଣ୍ଣ ଗୌର ହେଲେ ମଧ୍ୟ ଅନ୍ୟ ଭାଇ ଭଉଣୀଙ୍କ ଠାରୁ ଊଣା। ହେଲେ ସମସ୍ତେ ସଚ୍ଚରିତ୍ର, ସତ୍ୟବନ୍ତ। ବଡ଼ଭାଇ କାଶୀନାଥ ବଣେଇରେ ରେଞ୍ଜର ଥାଇ ଦେହତ୍ୟାଗ କରିଥିଲେ। ପଚାଶବର୍ଷ ପରେ ମଧ୍ୟ ସେଠା ଲୋକେ ଗୁଣ ଗାନ କରନ୍ତି ତାଙ୍କର। ରଘୁନାଥଙ୍କ ବୋହୂ ଜୋଇଁମାନେ ମଧ୍ୟ ଗୁଣବନ୍ତ। ନୂଆଗାଁ ଛୋଟ ଗାଁ, ଅଧିବାସୀ ଅଧିକାଂଶ ଗରିବ, ମଧ୍ୟ କହିଲେ ଠିକ୍ ହେବ ଏ ଗାଁକୁ ସରସ୍ୱତୀଙ୍କର ସେପରି କୃପା ନାହିଁ। ଏଣୁ ବାଳ ପାଚି ଝୋଟ ହେଲାଯାଏ ଜନ୍ମଗାଁ, ନିଜ ଭାଇ, ଭଉଣୀ, ଝିଆରୀ ପୁତୁରାମାନଙ୍କୁ ଝୁରି ହୁଏ ତାରାମଣି।

ତାରାମଣି ପାଟିରେ ମିଛ ପଇଟେ ନାହିଁ। ମିଛକୁ ରାଗ ଆଉ ଘୃଣା। ଅନେକ ସମୟରେ କବି ନୂଆଭାଉଜଙ୍କଠୁ ଶିଖିଥିବା କଥା, ଢ଼ଗଡମାଳି କହେ। ହେଲେ ସବୁଠୁ ବେଶୀ ଅସୁବିଧା ସେ ଅପ୍ରିୟ ସତ୍ୟ ଅପ୍ରିୟ ଭାବେ କହି ପକାଏ। ବଡ଼ ହେଲାପରେ ପୁଅ କେତେ ବୁଝାଇଛି, ସାନଭାଇ କେତେ କହିଛନ୍ତି - ହେଲେ ଏ ଖୋଇ ଗଲାନାହିଁ ତା'ର।

ସବୁବେଳେ ସଫାଲୁଗା, ସଫା ବିଛଣା, ସଂଭ୍ରାନ୍ତ ଠାଣୀ ତାର। କାମ, ପରିଶ୍ରମକୁ ସରାଗ ନାହିଁ। ଆଠ ଭାଇଭଉଣୀରେ କୋଳ ପୋଛା ଗେହ୍ଲୀ। ଶାଶୂ ଘରେ ସାନ ନଣନ୍ଦ ଦିଅରଙ୍କ ଠାରୁ କାଣ ରୋଷେଇ ଭଲ ଭାବେ ଶିଖିଲା। ହେଲେ ଯେଉଁ କାମ କରେ ନିଛିପର, ଶ୍ରଦ୍ଧା ଦେଇ କରେ। ରୋଷେଇ କରୁ, ପିଠା କରୁ, ବା ବଡ଼ି ପାରୁ, ମନ ପ୍ରାଣ ଆତ୍ମା ଢାଳି ଦେଇଥାଏ। ଏଣୁ ତା' ହାତରୁ ଉତୁରି ଥିବା ସବୁକଥା ସୁନ୍ଦର, ମଧୁର।

ମର୍ଯ୍ୟାଦାବନ୍ତ ପରିବାରର ଝିଅ, ଋଷିତୁଲ୍ୟ ଶ୍ୱଶୁରଙ୍କର ବୋହୂ, ଶ୍ୱଶୁର, ନଣନ୍ଦ, ନଣନ୍ଦେଇ, ଭଣକା, ଭଣଜାବୋହୂ, ସବୁ ବଂଧୁବାନ୍ଧବଙ୍କ ପ୍ରିୟ-ଗୁରୁଜନଙ୍କୁ ସମ୍ମାନ, ସମସ୍ତଙ୍କୁ ସମାଦର, ସବୁରି ଊର୍ଦ୍ଧ୍ୱରେ କର୍ତ୍ତବ୍ୟ, ବିବେକ। ନିଜକୁ କଷ୍ଟ ହେଲେ ମଧ୍ୟ କର୍ତ୍ତବ୍ୟରେ କେବେ ହେଲେ ଅବହେଳା ନାହିଁ। ବାହା ହୋଇ ଆସିଲା ବେଳେ ଶାଶୂ ନାହାନ୍ତି। ବଡ଼କା ଘରର କର୍ତ୍ତ୍ରୀ, ବେଶ କଡ଼ା, ଦିଅର ମଧୁର ସ୍ନେହୀ, ସ୍ୱାମୀ ବିବେକବାନ୍ ସଚ୍ଚରିତ୍ର, ବସୁଧୈବ କୁଟୁମ୍ବକମ୍ ଭାବରେ ଅନୁପ୍ରାଣିତ। ହେଲେ ଶ୍ୱଶୁର ସତେ ଅବା ଦେବତା-ତାଙ୍କ କାର୍ଯ୍ୟ ଏବଂ ବ୍ୟବହାରରେ ପ୍ରଭାବିତା ତାରାମଣି। ବାହାଘର ତେର ବର୍ଷ ପୂରିଲା। ସଂସାରଟା ତାର କେମିତି ଖାପ୍‌ଛଡ଼ା ଖାପ୍‌ଛଡ଼ା ଲାଗେ। ଗୋଟିଏ ଛୁଆ ପ୍ରଭୁ ଦେଇଥିଲେ, ଦୁଇମାସ ନ ପୂରୁଣୁ ନେଇଗଲେ। ହେଲେ ବାବୁଲା ଆସିବା ପରେ ସବୁ ବଦଳିଗଲା ତାରାମଣିର ଜୀବନରେ, ସଂସାର ଏବେ ହୋଇଗଲା ସଂପୂର୍ଣ୍ଣ ସଂଗଠିତ। ତା'ର ଯଶୋଦା ଜୀବନ ସତେ ଅବା ପୂର୍ଣ୍ଣହେଲା ତା'ର ପ୍ରାଣର କାହ୍ନୁକୁ ପାଇ, ହୁଏତ ଏଥର ସବୁଦିନ ପାଇଁ !

**କାହ୍ନୁର ଜୀବନ :**

କାହ୍ନୁର ଜୀବନ ଏବେ ସ୍ୱଚ୍ଛନ୍ଦ, ମଧୁର। ସାତବର୍ଷ ଜୀବନରେ କେତେ ଅଙ୍କା ବଙ୍କା ବାଟ, ବୁଲାଣି ପରେ, ଏବେ ପଥ ତା'ର ସରଳ, ସହଜ। ଯଶୋଦାର କାନି ତା'ର ନିର୍ଭୟ ଆଶ୍ରୟ। ଜଗନ୍ନାଥଙ୍କର ମନରେ ଆଉ ଖେଦ ନାହିଁ। ଉଦ୍‌ବିଗ୍ନତା ନାହିଁ ସାନପୁଅ ଲାଗି। ଆଉ କେବେ ତାଙ୍କୁ ଯିବାକୁ ପଡ଼ିନାହିଁ ପୁଅର ଭଲମନ୍ଦ ବୁଝିବାକୁ ପୁରୀ ଅବା ରାଉରକେଲା। ରାଉରକେଲା ବୋଧପୁରଠୁ ଛୋଟ, ନାଁକୁ ମାତ୍ର ସହର। ଏଠାରେ ରେଳ ଜଙ୍କସନ। ହାଓ୍ୱଡ଼ା ବମ୍ବେ ଲାଇନ୍‌ରେ ଏଠାରୁ ଶାଖା ଲାଇନ୍ ଯାଇଛି ବିରମିତ୍ରପୁର ଚୂନପଥର ମାଇନ୍‌ସକୁ। ଜିଲ୍ଲା ସୁନ୍ଦରଗଡ଼। ନୂଆ ସବ୍‌ଡିଭିଜନ ଉଦିତନଗରକୁ ପାନପୋଷରୁ ଉଠି ଆସିଛି। ଏଠୁ ବଣେଇକୁ ବସ୍ ଯାଏ। ଷ୍ଟେସନ୍

ପାଖ ଫରେଷ୍ଟ ଡିପୋରେ ଫରେଷ୍ଟର, କାହ୍ନୁର ନନ୍ଦ (ପିତା) ରାଜକିଶୋର ମହାନ୍ତି। ଛୋଟ ଘର। ସେଥିରୁ ବଖୁରିଏ ଘରେ ଅଫିସ୍। ରାଉରକେଲା ସ୍କୁଲରେ ଚତୁର୍ଥ ଶ୍ରେଣୀରେ ନାମଲେଖା ହେଲା ଜୁଲାଇ ଆରମ୍ଭ ୧୯୫୩ରେ। ବର୍ଷେ ପରେ ରାଉରକେଲାରେ ଷ୍ଟିଲ୍‌ପ୍ଲାଣ୍ଟ ହେବ ବୋଲି ପଣ୍ଡିତ ନେହେରୁ ଘୋଷଣା କଲେ। ବାପାଙ୍କର ବନ୍ଧୁ, ପରମ ପରୋପକାରୀ ବଟକୃଷ୍ଣ ମହାନ୍ତି ସିକ୍ୟୁରିଟ୍ ଅଫିସର ଭାବେ ପ୍ରଥମେ ଯୋଗ ଦେଲେ। ଫରେଷ୍ଟର ଚାକିରି, ବଦଳି ଜଙ୍ଗଲ ପାଖକୁ ପଡ଼ିପାରେ। କାହ୍ନୁର ପଢ଼ାରେ ଅସୁବିଧା ହେବ। ବଟବାବୁ ନଭେମ୍ବର ୧୯୫୫ ରେ ବାପାଙ୍କୁ ଷ୍ଟିଲ୍‌ପ୍ଲାଣ୍ଟରେ ଚାକିରୀ କରାଇ ଦେଲେ। ନୂଆ ଫରେଷ୍ଟରଙ୍କୁ ଅନୁରୋଧ କରି ଷଷ୍ଠଶ୍ରେଣୀ ବାର୍ଷିକ ପରୀକ୍ଷା ୧୯୫୬ ଏପ୍ରିଲ ଯାଏ ଫରେଷ୍ଟ ଡ଼ିପୋରେ ରହିଲେ ସେମାନେ। ପାହାଡ଼ିଆ ଜାଗା, ଖରାଦିନେ ସେତେବେଳେ, ନିଆଁର ପବନ ବହେ ରାତି କେତେବେଳ ଯାଏ, ଯାହାକୁ କହନ୍ତି 'ଲୁ'। ଶୀତଦିନେ ହାଡ଼ଭଙ୍ଗା ଶୀତ। କାଠର ପ୍ରାବଲ୍ୟ। ବଡ଼ ବଡ଼ କାଠ ଗଣ୍ଡିରେ ସଞ୍ଜବୁଡ଼ୁ ନିଆଁ ଲାଗିଥାଏ ଘର ଉଷୁମ କରିବାକୁ ଦିନ ହେଲା ଯାଏ। ପ୍ରତିବର୍ଷ ବାର୍ଷିକ ପରୀକ୍ଷା ପରେ ନୂଆଗାଁ ଓ ପୁରୀ, ସାଙ୍ଗରେ ସୁବିଧା ହେଲେ ବିରିବାଟୀ। କଟକ ଷ୍ଟେସନ୍‌କୁ ଯିବା ଆସିବା ବାଟରେ ଓଲିଏ ପାଇଁ ପିଠାପୁର, କଟକ।

ନୂଆଗାଁରେ ସେତେବେଳେ ତୋଟା ଥିଲା, ବେତବଣ, ବାଘୁଆଦଣ୍ଡା, ମଠ ପାଖଦଣ୍ଡା, ଗାଁ ମୁଣ୍ଡ କଦମ୍ବ ଗଛକୁ ଘେରାଇ ସୁନ୍ଦର ଚାନ୍ଦିନୀ ଥିଲା। ପୋଖରୀମାନଙ୍କ ଜଳ ଥିଲା ନିର୍ମଳ, ଖଞ୍ଜାବାଙ୍ଖିର ଜଳ ଥିଲା ମଧୁର। ଜମିରୁ ସବୁ ମିଳୁଥିଲା, ଗହମ ଛଡ଼ା; ବଗିଚାରୁ ମିଳୁଥିଲା ପରିବା। ଗାଁରେ ରହୁଥିଲେ ଆଦରର ଦାଦାଖୁଡ଼ି ନନ୍ଦକିଶୋର ଓ ରତ୍ନମଣି ଏବଂ ପରମପ୍ରିୟ ଜେଜେ ବନମାଳୀ, ଯିଏ ଗୋବିନ୍ଦକୁ ଭିକମାଗି ନେଇ ଆସିଥିଲେ। ଦିନରେ ତାସ୍ ଖେଳ କଦମ୍ବ ସ୍କୁଲ ଖାଲି ହତାରେ। ସନ୍ଧ୍ୟାବେଳେ ନିଜ ସମାସ୍କନ୍ଧ (ବାଉରୀ ସାହିର ହୁଅନ୍ତୁ ପଛେ) ମାନଙ୍କ ସାଙ୍ଗେ ମଠ ଦଣ୍ଡାରେ ବାଗୁଡ଼ି ଖେଳ। ନଡ଼ିଆ ଗଛର ସୁଲୁସୁଲୁ ଶୀତଳ ପବନରେ ବିଭୋର ଦିନସବୁ ଚାହୁଁଚାହୁଁ ବିତିଯାଏ। ଯୋଉଦିନ ବାଗୁଡ଼ି ଡୁଡୁ ଡ଼େରୀ ଯାଏ ହୋଇଯାଏ ବା ବରଗାଡ଼ିଆରେ ପହଁରୁ ପହଁରୁ ବେଳ ଗଡ଼ିଯାଏ, ଫେରିବା ବେଳକୁ ଛାଟଟିଏ ଧରିଥାଏ ଯଶୋଦା। କାହ୍ନୁ ଜାଣେ ଏହାର ଓଷଦ। ସିଧା ଦଣ୍ଡବତ ପଡ଼ିଯାଏ। ଛଳନାରାଗ କୁଆଡ଼େ ହଜିଯାଏ। ହସି କରି କୋଳ କରିନିଏ ଯଶୋଦା।

ବିରିବାଟୀରେ ପିଉସୀ ଚିତ୍ରଲେଖାଙ୍କ ଘର ଜମିଦାର, ବଡ଼ଘର। ସେ ପରିବାରର କର୍ତ୍ତ୍ରୀ, ବଡ଼ ଭାଇଙ୍କ ପତ୍ନୀ, ବିରାଟ ମାଛ ପୋଖରୀ, ତୋଟା, ପ୍ରକାଣ୍ଡ

ବଗିଚା, ଅଭ୍ୟାଗତ ହାଉଯାଉ, ସବୁବେଳେ ଚୁଲି ଲାଗିଥାଏ। ଅପା ଭାରୀ ସ୍ନେହୀ, ଖିଆପିଆ ଭଲ କରି ବୁଝେ। ସେଇ ଗାଁରେ ବି ସ୍ନେହର ମାଉସୀ (ଯଶୋଦାର ବଡ଼ଭଉଣୀ) କ୍ଷେତ୍ରମଣିଙ୍କ ଘର। ପିଉସୀ, ମାଉସୀଙ୍କ ଘରେ ୩, ୪ ଦିନ ଆନନ୍ଦରେ ବିତିଯାଏ।

ପୁରୀକୁ ସେ ଏକା ଏକା ଯାଏ। ପ୍ରାୟ ପନ୍ଦର ଦିନ ରହଣି। ପରିଷ୍କାର ସମୁଦ୍ର କୂଳ, କି ମନୋହର। ଚାଲି ଚାଲି ଗଲେ ପ୍ରାୟ ମାଇଲିଏ ଘରଠାରୁ (ସେତେବେଳେ ତ ଚାଲିବାଟା ହିଁ ଏକମାତ୍ର ଯାତାୟତର ପନ୍ଥା। କାହ୍ନୁର ମନେ ଅଛି, ପିଲାଦିନେ ବିରିବାଟୀରୁ ନୂଆଗାଁ ନେଇଯିବା ପାଇଁ ନରସିଂହ ମାଷ୍ଟ୍ରେଙ୍କୁ ଜେଜେ ପଠାଇଥିଲେ। 'ଏଇ ଆମ ଗାଁ ଦିଶୁଛି' ବୋଲି କହି ସାତ ବର୍ଷର ବାବୁଲାକୁ ୬ ମାଇଲରୁ ବେଶୀ ହେବ ଚଲେଇ ନେଇଥିଲେ ମାଷ୍ଟ୍ରେ)। ଶ୍ରୀଜଗନ୍ନାଥଙ୍କ ମନ୍ଦିର, ଘରକୁ ତିନି ମିନିଟର ବାଟ। ସେଠି ପରମ ଶାନ୍ତି। ବାବୁଲାକୁ ଦେଖି ଦେଲେ ବୀରକିଶୋରଙ୍କୁ ସତେ ଅବା ପୁତ୍ ନର୍କରୁ ଉଦ୍ଧାର ପାଇଗଲେ ବୋଲି ପ୍ରତ୍ୟୟ ଆସେ। ଆନନ୍ଦରେ ପାଦ ତଳେ ଲାଗେ ନାହିଁ। ପଦ୍ମକେଶରୀ ଅରୁଆଭାତ, ମାଛ ସହ କେତେ ପ୍ରକାର ବ୍ୟଞ୍ଜନ, ଆମ୍ବ, କେତେ ପ୍ରକାର କୋଳି, ପୁଣି ରାତିରେ କେତେ ପ୍ରକାର ପିଠା। ତା ସାଙ୍ଗକୁ ଶୀତଳ ପବନରେ ଖରାଦିନ ବୋଲି ଜାଣି ହୁଏ ନାହିଁ।

ଏଥର ଛୁଟୀ ପରେ ବାପାଙ୍କ ସାଙ୍ଗେ ଏକା ଫେରିଲା କାହ୍ନୁ। ଘର ମିଳି ନାହିଁ। ହିନ୍ଦୁସ୍ଥାନ ଷ୍ଟିଲ୍ କମ୍ପାନୀରୁ। କାହ୍ନୁ ରହେ ମୋହନଲାଲ ଅଗ୍ରୱାଲ, ବାପାଙ୍କର ମାଡ଼ୁଆଡ଼ି ବନ୍ଧୁଙ୍କ ଘରେ, ଖାଏ ବାପାଙ୍କ ପ୍ରୀତି ବନ୍ଧୁ ଗୁରୁଚରଣ ଦାଦାଙ୍କ ହୋଟେଲରେ। ବାପା ରହନ୍ତି ଓ ଖାଆନ୍ତି ଗୋରେଲାଲ ଶର୍ମାଙ୍କ ଘରେ। ଏମିତି ଦେଢ଼ବର୍ଷ ରହିଲା ପରେ ଅସ୍ଥାୟୀ ଘର ମିଳିଲା ଓ ଯଶୋଦା ଆସିଲା ରାଉରକେଲା। କାହ୍ନୁ ଚତୁର୍ଥଶ୍ରେଣୀରେ ସ୍କୁଲରେ ନାଁ ଲେଖାଇଲା ବେଳଠାରୁ ଶ୍ରେଣୀରେ ପ୍ରଥମ ହେଉଥାଏ। ପଞ୍ଚମ ଓ ସପ୍ତମରେ ବୃତ୍ତି ପାଇବାକୁ ସ୍କୁଲ ସାର ଆଶା ବାନ୍ଧିଥିଲେ-ହେଲା ନାହିଁ। ଏକୁଟିଆ ରହି ଅସୁବିଧା ହେଉଥାଏ। ଯଶୋଦା ଆସିବା ପରେ ପାଠରେ ବେଶୀ ମନ ଦେଲା କାହ୍ନୁ। ଯଶୋଦା ବି ପାଖେ ପାଖେ ଜଗିଥାଏ। ଏହା ଭିତରେ ବଡ଼ ଅପା ଚିତ୍ରଲେଖାଙ୍କ ଏକମାତ୍ର ପୁଅ ରଜନୀକାନ୍ତ, ଯିଏ ବାଙ୍ଗାଲୋରର ଜାମ୍‌ସେଦ୍‌ଜୀ ଟାଟାଙ୍କ ପ୍ରସିଦ୍ଧ କଲେଜରୁ ଇଞ୍ଜିନିୟରିଂ ପାସ୍ କରିଥାନ୍ତି - ସିଏ ଆସି ଷ୍ଟିଲ୍ ପ୍ଲାଣ୍ଟ୍‌ରେ ଇଞ୍ଜିନିୟରଭାବେ ଚାକିରୀରେ ଯୋଗଦେଲେ। ଦଶମ ଶ୍ରେଣୀ ବାର୍ଷିକ ପରୀକ୍ଷା ପରେ ଚେତାହରା ଟାଣଖରା ସତ୍ତ୍ୱେ ବାପା କହିଲେ ପୁରୀ ଓ ଗାଁକୁ ଏହି ବର୍ଷ ନଯାଇ ମାଟ୍ରିକ୍ (ଏକାଦଶ) ପରୀକ୍ଷା ପାଇଁ, ରାଉରକେଲାରେ ରହି ପ୍ରସ୍ତୁତ ହେବାକୁ। ଏଥର କିନ୍ତୁ

ନନ୍ଦ, ଯଶୋଦାଙ୍କ ସ୍ୱପ୍ନକୁ ପୂରଣ କଲା କାହ୍ନୁ। ୧୯୬୧ ମସିହାରେ ଉଦିତନଗର ହାଇସ୍କୁଲରୁ ମାଟ୍ରିକ୍ ପରୀକ୍ଷାରେ ସମଗ୍ର ଓଡ଼ିଶାରେ ସପ୍ତମ ସ୍ଥାନ ଅଧିକାର କରି ସେ ଜାତୀୟ ବୃତ୍ତି ପାଇଲା।

ସମସ୍ତଙ୍କ ସ୍ୱପ୍ନ ରେଭେନ୍‌ସା କଲେଜ। କଟକ ପିଠାପୁରରେ ଜନ୍ମଦାତ୍ରୀ ମା'ଙ୍କ ପାଖେ ରହି ପାଠ ପଢ଼ିଲା ଗୋବିନ୍ଦ। ଯଶୋଦା ବର୍ଷେ ଗାଁରେ ରହିଲା। କଟକରେ ପାଠ ପଢ଼ିଲେ ମାସରେ ଥରେ ଦି'ଥର ତ ପୁଅ ତାକୁ ଦେଖିବାକୁ ଆସିପାରିବ। କିଛିଦିନ କଟକରେ ନଣନ୍ଦଙ୍କ ଘରେ ମଧ୍ୟ ରହିଲା ସିଏ-କାହ୍ନୁକୁ ଛାଡ଼ି ରହିବା କଷ୍ଟ ଲାଗେ ବୋଲି। ଜଗନ୍ନାଥଙ୍କ ବଡ଼ପୁଅ ଉମେଶ ଚନ୍ଦ୍ର ଇଞ୍ଜିନିୟରିଂ ପଢୁଥାନ୍ତି ବୁର୍ଲାରେ, ମଝିଆଁ ପୁଅ ସରୋଜ ମଧ୍ୟ ରାଉରକେଲା ଇଞ୍ଜିନିୟରିଂରେ ନାମ ଲେଖାଇଲେ। ତାଙ୍କ ମନଥାଏ ସାନ ଗୋବିନ୍ଦ ବଡ଼ ଡାକ୍ତର ହେବ। ଏଣୁ ସିଏ ଇଞ୍ଜିନିୟରିଂ ପାଇଁ ଦରଖାସ୍ତ ଦେଇନଥାଏ। ହେଲେ ଗ୍ରେଙ୍କ ମାଦଳାପାଞ୍ଜି ପରି ବୃହତ୍ ଆନାଟୋମି ବହି ମୁଖସ୍ତ କରିବା ଓ ଆନାଟୋମି ହଲରେ ମୁର୍ଦ୍ଦାର କାଟିବା ବଡ଼ କଷ୍ଟ ଓ ଭୟଙ୍କର ବୋଲି ହୃଦ୍‌ବୋଧ କରି ଆଖର ଡାକ୍ତରୀରେ ନାଁ ଲେଖାଇଲା ନାହିଁ ଗୋବିନ୍ଦ। ଏପରିକି ଭୟରେ କାକୁସ୍ଥ ହୋଇ ସାରଳାଙ୍କ ପାଖରେ ଗେଞ୍ଜି ହୋଇ ଶୋଇଲା କେଇଦିନ। ପର ବର୍ଷ ଇଞ୍ଜିନିୟରିଂ ପଢ଼ିବାକୁ ଫେରିଗଲା ରାଉରକେଲା। ସେତେବେଳେ ଛାତ୍ରାବାସରେ ରହିବା ବାଧ୍ୟ ହେଲେ ସୁଦ୍ଧା ପ୍ରତି ଶନିବାର ଘରକୁ ଆସି ଯଶୋଦା-ହାତରନ୍ଧା ସୁସ୍ୱାଦୁ ଖାଦ୍ୟ ଭୋଜନ କରି ରବିବାର ହଷ୍ଟେଲ୍ ଫେରିଯାଏ। ଏମିତି ଚାହୁଁ ଚାହୁଁ ପାଞ୍ଚବର୍ଷ ବିତିଗଲା। ଚାକିରୀ ପାଇବା କଷ୍ଟ ହେଲେ ମଧ୍ୟ ଡ଼ିସେମ୍ବର ୧୯୬୯ରେ ହିନ୍ଦୁସ୍ତାନ ଷ୍ଟିଲ୍‌ରେ ଚାକିରୀ ପାଇ ଦୁର୍ଗାପୁର, ପଶ୍ଚିମବଙ୍ଗରେ ପୋଷ୍ଟିଂ ହେଲା ତା'ର। ପୁଣି ଥରେ ଏକୁଟିଆ ହେବାର ଦୁଃଖରେ ଭାଙ୍ଗି ପଡ଼ିଲା ଯଶୋଦା।

ଦେଢ଼ଶୁର ବୀରକିଶୋର ପୁଅକୁ ବିବାହ ଦେଲେ କଟକ କାଳୀ ଗଳିର ଶ୍ରୀମତୀ ପଙ୍କଜିନୀ ଓ ଶ୍ରୀବିଜୟ ଚନ୍ଦ୍ର ଦାସଙ୍କ କନ୍ୟା ଆରତି ସହ, ଜାନୁୟାରୀ ୩୧, ୧୯୭୧ରେ, ପୁଅ ଶାଶ୍ୱତର ଜନ୍ମ ହେଲା ପୁରୀରେ ନଭେମ୍ବର ୧୯, ୧୯୭୨ରେ। ଏସବୁ ଭିତରେ କିନ୍ତୁ ଯଶୋଦାର ଏକଲାପଣ ମଧ୍ୟ ଦୁଃଖ ଦେଉଥାଏ କାହ୍ନୁକୁ। ରାଜକିଶୋର ବହୁ ଚେଷ୍ଟା କରି ଶେଷରେ ପୁଅକୁ ଦୁର୍ଗାପୁରରୁ ରାଉରକେଲା ବଦଳି କରି ଆଣିବାକୁ ସଫଳ ହେଲେ ଭଣଜା ରଜନୀକାନ୍ତଙ୍କ ସାହାଯ୍ୟରେ ୧୯୭୫ ମସିହା ଜୁଲାଇ ମାସରେ। ସେପ୍‌ଟେମ୍ବର ୧୧ରେ ଜନ୍ମ ହେଲା ଝିଅ ପ୍ରଜ୍ଞା ରାଉରକେଲାରେ।

ଏଣିକି ଜୀବନ ଉତ୍ତେଜନାହୀନ, ସରଳ।

ରାଉରକେଲା ନିଜ ଭୂମି । ଚାକିରୀରେ ପାଠପଢ଼ା ବେଳର ସୁନାମ ଆଣିବାକୁ ହେବ । ଅନେକ ପରିଶ୍ରମ । ପିଲାମାନେ ବଡ଼ ହେଲେ, ତାଙ୍କର ପାଠପଢ଼ା, ଚାକିରୀ । ବାପା ରାଜକିଶୋର ଚାକିରୀରୁ ଅବସର ନେଲେ ୧୯୮୬ ଡିସେମ୍ବର ଶେଷରେ । ସେତେବେଳକୁ ସାନଭାଇ ନନ୍ଦକିଶୋରଙ୍କର ଦେହାନ୍ତ ହୋଇସାରିଛି । ଏଣୁ ଅନେକ ସମୟରେ ଗାଁରେ ଜମିଜମା କଥା ବୁଝିବାକୁ ରହିବାକୁ ପଡ଼େ । ହେଲେ ଯଶୋଦାର ମନ ରାଉରକେଲାରେ । ଯାହାହେଉ ବେଶୀ ଭାଗ ରାଉରକେଲା, କିଛି ଦିନ ଗାଁ, ଏମିତି ଜୀବନ ବିତିଯାଏ । ଡିସେମ୍ବର ପହିଲା ୨୦୦୨ରେ ବିବାହ ହୁଏ ପ୍ରଜ୍ଞାର ଯାଜପୁର ଜିଲ୍ଲା ବରପଦା କପିଳା ଗ୍ରାମର ଶ୍ରୀମତୀ ଊର୍ମିଳା ଓ ଶ୍ରୀଯୁକ୍ତ ବୈକୁଣ୍ଠନାଥ ସାମଲଙ୍କ ମଧ୍ୟମପୁତ୍ର ପ୍ରକାଶଙ୍କ ସହିତ । ଚାହୁଁଚାହୁଁ କାହ୍ନୁର ଚାକିରିରୁ ଅବସର ନେବାର ସମୟ, ଷାଠିଏ ବର୍ଷ ପାଖ ହୋଇ ଆସେ, ରାଜକିଶୋର ୯୦ ପାରି ହୋଇସାରିଛନ୍ତି, ଯଶୋଦା ପାଞ୍ଚବର୍ଷ ସାନ । ସେମାନେ ଖଞ୍ଜାରେ ବଂଶର ଅନ୍ୟଭାଇମାନଙ୍କ ପରିବାର ପାଖରେ ରହିବାକୁ ଗାଁ ମାଟିକୁ ଫେରି ଆସନ୍ତି । ଉଚ୍ଚଚାକିରୀ କରି ମଧ୍ୟ ସଚ୍ଚୋଟ ଚରିତ୍ର, ପଇସାଏକୁ ଦି ପଇସା କରିବାରେ ଆଗ୍ରହ ନାହିଁ କାହ୍ନୁର । ଆର୍ଥିକ ସ୍ଥିତି ମଜଭୁତ ନୁହଁ । ଏଣୁ ରାଉରକେଲା ଷ୍ଟିଲ୍ ପ୍ଲାଣ୍ଟ୍‌ରୁ ଅବସର ନେବା ପରେ ପୁଣି ଚାକିରୀ କରିବାକୁ ପଡ଼େ କାହ୍ନୁକୁ କଲିକତାରେ । କେତେବର୍ଷ ବା ଚାକିରୀ । ଶେଷରେ ତ ଭୁବନେଶ୍ୱରରେ ବନ୍ଧୁବାନ୍ଧବମାନଙ୍କ ପାଖରେ ରହିବାକୁ ହେବ । ବଡ଼ସହରରେ ସପତ୍ନୀକ ରହିବାକୁ ହେଲେ ବଡ଼ ବେଶୀ ଖର୍ଚ୍ଚ - ଏଣୁ କଲିକତାରେ ଜଣଙ୍କ ମାନିଆ ତାପାଇଁ ଘର ନିଏ କାହ୍ନୁ । ପତ୍ନୀ ତାର ଭୁବନେଶ୍ୱରରେ ଏକାକିନୀ । ଘରକୁ ଠିକ୍ ଠାକ୍ କରି ନୂଆଜାଗାରେ ଆରେଇବାକୁ ବେଶ୍ କିଛି ବର୍ଷ ଲାଗିଯିବ ।

## ଅନେକ ଅଭୁଲା କଥା :

ସମୟ ବଡ଼ ବଳବାନ । କୋଉ ଛଟକରେ ବହିଯାଏ କେହି ବୁଝିପାରନ୍ତି ନାହିଁ । କାଲି ପରି ଲାଗୁଛି ଅଥଚ କେତେ କେତେ ବର୍ଷ ବିତିଗଲାଣି । କେମିତି ପ୍ରଭୁଙ୍କ ବିଧାନ, ଏମିତି ବିଚିତ୍ର ଜୀବନ ବୋଲି ଅଳ୍ପ ବୟସରୁ ସବୁ ବୁଝି ପାରୁଥିଲି, ମନେ ରଖିପାରୁଥିଲି । ବେଳେବେଳେ ଭାବେ, ପ୍ରଭୁ ଦେଲେ ଏପରି ଅଲଗା ଜୀବନ - କାହିଁକି ବୀରକିଶୋର ଭଉଣୀର ପୁଅକୁ ହିଁ ପୋଷ୍ୟ ପୁତ୍ର କରିବାକୁ ଅଝଟ ହେଲେ ? ସବୁ ଦେଇଛନ୍ତି ତାକୁ, କିଛି ପାଇ ନାହାନ୍ତି ଏ ଜନ୍ମରେ ସେ ପୁଅଠାରୁ । ଅଥଚ ତାକୁ ଦେଖିଲେ କାହିଁକି ତାଙ୍କ ମନରେ ସବୁ ପାଇଯିବାର ଆନନ୍ଦ ଭରି ଯାଉଥିଲା - କାହିଁକି

ବନମାଳୀ ମହାନ୍ତି ଏତେ କଷ୍ଟ କରି ଝିଅ ଘରୁ ବଡ଼ପୁଅ ପାଇଁ ମାଗିନେଲେ ମୋତେ। ଫଳିର୍ବାର ସବୁ ଆଶା ଥାଇ ସୁଦ୍ଧା ତାରାମଣି କାହିଁକି ଆଦରି ନେଉଥିଲା ମୋତେ, କୌଶଲ୍ୟା ବୋଉ, ଆବୋଉଙ୍କ ଜିମା ଦେବା ପାଇଁ ମୋତେ ଯେତେ ଥର ନୂଆଗାଁ ନେଇ ଯାଉଥିଲା ! ଅଝଟ ହେଲେ କାହିଁକି ସେ କୋଳ କରି ନେଉଥିଲା ମୋତେ ? ଶ୍ରାବଣର ଭରାକୂଅରୁ ମୋତେ ଉଦ୍ଧରିବା ପାଇଁ କ'ଣ ଆସିଥିଲା କୌଶଲ୍ୟା ବୋଉ ସୁଦୂର କଳାହାଣ୍ଡି ମୂଲକରୁ ? କାହିଁକି ସାତବର୍ଷ ବୟସର ପିଲା, ମୁଁ ଜୀବନର ନିଷ୍ପତ୍ତି ନେଇ ଚିଠି ଲେଖି ଦେଲି ରାଉରକେଲାରେ ରହି ପାଠ ପଢ଼ିବି ବୋଲି। କାହିଁକି ତାରାମଣିକୁ ଭୟଙ୍କର ବସନ୍ତ ହେଲା, ତା'ପୁଅର ଏକୋଇଶା ପରେ ଓ ଅଣହେଳାରେ ଛୁଆଟା ଦି'ମାସ ନ ହେଉଣୁ ଆଖି ବୁଜିଦେଲା ଓ ପରେ ଆଉ କୌଣସି ସନ୍ତାନ ହେଲା ନାହିଁ ତା'ର। କାହିଁକି ଖୁଡ଼ି ରତ୍ନମଣି ହେଲା ନିଃସନ୍ତାନ ? କଦବା ନିଛାଟିଆ ବେଳ ବା କେବେ ଥକିପଡ଼ିଲେ ମନରେ ଗୁଡ଼େଇ ତୁଡ଼େଇ ଏମିତି ଅନେକ ଅଛିଣ୍ଡା ପ୍ରଶ୍ନ ଆସେ।

ମୋ ପାଇଁ ବୋଉର ଅହେତୁକ ନିଆରା ଭଲ ପାଇବା ଥିଲା ସତ, ହେଲେ, ସମସ୍ତେ ଭଲ ପାଉଥିଲେ ମୋତେ। ପିଲାଦିନୁ କ୍ଷୁଦ୍ରମନା ନ ହୋଇ ଦ୍ରୌପଦୀଙ୍କୁ କୁନ୍ତୀ ବୁଝାଇବା ପରି ବୋଉ ମୋତେ ବୁଝାଇଥିଲା। "କାହାରି କିଛି ନାହାନ୍ତି ବାବୁ। ତୁ ସମସ୍ତଙ୍କର। ସମସ୍ତଙ୍କୁ ସମାନ ଦେଖିବୁ।"

କାଳର ସୁଅରେ ଜଣ ଜଣ କରି ସମସ୍ତେ ଭାସିଗଲେଣି। କାହିଁକି କଷ୍ଟ ପାଇ ଅପେକ୍ଷା କରି ରହିଛି ଯଶୋଦା। ଜେଜେ (ବନମାଳୀ ମହାନ୍ତି)ଙ୍କର ପୁଅ ବୋହୂ, ଝିଅ କୋଇଁ ହୋଇ ବାର ଜଣ ଥିଲେ। କାଳର ସୁଅରେ, ଯଶୋଦାକୁ ଛାଡ଼ି ଜଣ ଜଣ କରି ସମସ୍ତେ ଭାସିଗଲେଣି। ଅକାଳରେ, ନାତୁଣୀ, ନାତି, ନାତୁଣୀବୋହୂ ହୋଇ ବି ଚାରି ଜଣ ଗଲେଣି। କାହିଁକି କଷ୍ଟ ପାଇ ଅପେକ୍ଷା କରି ରହିଛି ଯଶୋଦା।

ଗାଁର ବରଜୁ ବଡ଼ ବାପା, ପରଲୋକଗତା ପତ୍ନୀଙ୍କ ବିରହରେ କବିତା ବହିଟିଏ ଲେଖିଥିଲେ। ୧୯୬୩ ମସିହାରେ। ବୋଉ ଖଣ୍ଡେ ବହି ରଖିଥିଲା। ଅନେକ ସମୟରେ ପଢୁଥିଲା। ମାଉସୀ (କ୍ଷେତ୍ରମଣୀ)ର ବଡ଼ ଝିଅ ବିଦୁ ଦେଈର ତିନି ଚାରିବର୍ଷ ପୂର୍ବରୁ ଦେହାନ୍ତ ହେବାର ଦୁଃଖରେ ମନୁଭାଇ (ଢେଙ୍କାନାଳର ଶ୍ରୀ ମନମୋହନ ପଟ୍ଟନାୟକ) ଓ ଦେଈଙ୍କ ପିଲାମାନେ ଗୋଟିଏ ବହି ପ୍ରକାଶ କରିଥିଲେ। ଭଲ ଥିବାବେଳେ ବୋଉ ସେ ବହି ପଢୁଥିଲା। ସିଏ ବି କ'ଣ ମନ ଗହନରେ ଏକ ନିରୀହ ଆଶାର ମିଞ୍ଜି ମିଞ୍ଜି ଦୀପଟିଏ ଜାଳି ରଖିଛି କିଏ ଜଣେ ତା' ବିୟୋଗରେ ସେପରି ଏକ ବିଷାଦ ଆଖ୍ୟାୟନ ଲେଖିବ।

ଜଗନ୍ନାଥ ପଟ୍ଟନାୟକ ଥରେ ପିଲାମାନଙ୍କୁ କହିଥିଲେ- "ଶେଷବେଳେ ପାଣି ଗିଲାସେ ଯିଏ ଦେଇଛି, ଜୀବନ ସାରା ସେ କଥା ମନେ ରଖିବ"। ପଣ୍ଡିଚେରୀ ଆସିବା ପୂର୍ବରୁ ଲେଖିଥିବା ମା'ଙ୍କର ଏକ ସନ୍ଦର୍ଭ 'ବହୁ ପୁରା କାଳର କଥା' ମାତୃ ରଚନାବଳୀ ଦ୍ୱିତୀୟ ଖଣ୍ଡରେ ସ୍ଥାନିତ ହୋଇଛି। ଏଥିରେ ମା' କୃତଜ୍ଞତାକୁ ମାନବିକ ଗୁଣ ମଧ୍ୟରେ ଏକ ଉଚ୍ଚ ସ୍ଥାନ ଦେଇଛନ୍ତି। ମାଟି, ପାଣି, ପବନ, ଆକାଶ, ବନସ୍ପତି, ବାପ ମା, କୁଟୁମ୍ବ, ପ୍ରତିବେଶୀ, ଭାଇ, ଭାଉଜ, ଭଉଣୀଭିଣୋଇ, ବନ୍ଧୁ ବାନ୍ଧବ, ଶିକ୍ଷାସଦନ ସମୂହ, ରାଉରକେଲା ଷ୍ଟିଲ ପ୍ଲାଣ୍ଟ୍ ଓ ସହରର ସମଗ୍ର ନାଗରିକ, ଆଲୋକ ବାଗାଡ଼ିଆ, ସଂଜୀବ ରାୟଗୁରୁ, ଅଙ୍ଗୁର ଅପାଙ୍କ ପରିବାର, ଅମର ମିଶ୍ର, ମଗସ୍ତଙ୍କ ପାଖରେ ଅସୀମ କୃତଜ୍ଞ ଗୋବିନ୍ଦ, ବାବୁଲା, ଭାରତଭୂଷଣ। ହେଲେ ଯଶୋଦା ପାଇଁ ତା' କୃତଜ୍ଞତାର ଗଭୀରତା ଭିନ୍ନ। ତାର ପ୍ରତିକୋଷରେ ମୁଦ୍ରିତ ହୋଇ ରହିଛି କୃତଜ୍ଞତା ଯଶୋଦାଙ୍କ ପାଇଁ। ଆଜି ଯଶୋଦାର ଜୀବନଦୀପରୁ ତେଲ ସରିଆସୁଥିବାବେଳେ ଗୋଟି ଗୋଟି ମନେ ପଡୁଛି ସବୁକଥା। ମନରେ ଅକୁହା ବ୍ୟଥା ଭରିଦେଉଛି ସବୁ ଅତୀତର କଥା। ଆଖି କୋଣରେ ଜମି ଆସୁଛି ବିନ୍ଦୁ ବିନ୍ଦୁ ଲୁହ। ସେ ଲୁହ ପ୍ରାପ୍ତିର, କୃତଜ୍ଞତାର।

ଦ୍ୱାପରର ଯଶୋଦା ଓ କାହ୍ନୁଙ୍କ ଜୀବନ ତ ଲୀନ ହୋଇ ରହିଥିଲା ଗୋଟିଏ ଅନ୍ୟଟି ମଧ୍ୟରେ। ସେ ଜୀବନରେ ତ ପ୍ରତିଦିନ ଉନ୍ମୋଚିତ ହେଉଥିଲା କେତେ ମନୋରମ, ଦିବ୍ୟ ଦୃଶ୍ୟ। ଏ କଥନିକାର ମୁଖ୍ୟ, କଳିଯୁଗ ଯଶୋଦା ଓ ତା'ର ପ୍ରିୟ କାହ୍ନୁର ଜୀବନରେ ମଧ୍ୟ ଘଟିଯାଇଛି ମନରେ ଗାର କାଟିଯିବା ପରି ଅନେକ ଘଟଣା ଓ କାହ୍ନୁର କୋଷରେ ଚିରକାଳ ମୁଦ୍ରିତ ହୋଇ ରହିଯାଇଛି ଅନେକ ସ୍ମୃତି ଓ କୃତଜ୍ଞତାର ଲିପି। ଯଶୋଦାର ଲିଭି ଆସୁଥିବା ଜୀବନଦୀପ ପାଖରେ କାହ୍ନୁର ମନକୁ ଆକୁଳ, ଅଭିଭୂତ କରି ଦେଉଛି, ସାତ ପରସ୍ତ ବିସ୍ମୃତିର ଚଟାଣ ବିଦୀର୍ଣ୍ଣ କରି ବାରମ୍ବାର ମନେ ପଡି ଯାଉଛି, ସେଇ ସବୁ ହଜି ଯାଇଥିବା ଦିନର କେତେ ଅଭୁଲା କଥା...

## (୧) ସଂହତିର ମଧୁର ରାଗିଣୀ :

ଗାଁ ପରି ଛୋଟ ସହର ରାଉରକେଲା। ମୁରୁମ ରାସ୍ତାଟିଏ ବଣେଇ ଯାଏ ଯାଇଛି। ବେଶୀ ଭାଗ ଲୋକ ହିନ୍ଦୀଭାଷୀ। କାହ୍ନୁ ଶିଖି ନେଲା ଖୁବ୍ ଶୀଘ୍ର ହିନ୍ଦୀ ଲେଖା ଓ କହିବା। ଛୋଟ ପରିବାର ସୁଖୀ ପରିବାର, ଶାନ୍ତିରେ ବିତିଯାଏ ଦିନ। ଭଗବାନ ସାର୍ ଘରକୁ ଆସି ଟିଉସନ କରନ୍ତି। ବାପା ହସ୍ତାକ୍ଷର ଲେଖାନ୍ତି ଓ ରାତିରୁ

ଉଠି ବିଛଣାରେ ଥାଇ ପଣିକିଆ ଅଭ୍ୟାସ କରାନ୍ତି ପଚିଶକ ଯାଏ। ଘର ପାଖେ ରଜାଙ୍କ ସିନେମା ହଲ୍। ସିନେମା ପ୍ରତି ଆକର୍ଷଣ ବଢ଼ିବାରୁ ସିନେମା ଦେଖିଲେ ମନ ଖୁସି ହେବ ଓ ପାଠରେ ମନ ଲଗାଇବ ବୋଲି ବାପା ସିନେମା ଦେଖାଇ ନିଅନ୍ତି ବେଳେବେଳେ। ପଞ୍ଚମ ଶ୍ରେଣୀରେ ପାନପୋଷରେ ବାର୍ଷିକ ପରୀକ୍ଷା ସେଣ୍ଟର ଥାଏ, ସେଠାରେ ଚାରିଦିନ ରହିବାକୁ ହେବ। ୫୫ ମସିହା ଏପ୍ରିଲ ମାସ। ଟ୍ରେନ୍‌ରେ ପାନପୋଷ ବସାଇବା ପାଇଁ ନେବା ପୂର୍ବରୁ ବାପା 'ଅନାରକଲି' ସିନେମା ଦେଖାଇ ନେଇଥିଲେ। ସବୁସତ୍ତ୍ୱେ ସେତେବେଳେ ବାପାଙ୍କ ମୁହଁ ଲାଗୁଥିଲା ଗମ୍ଭୀର। ରାଗିରାଗି ପରି, (ଯଦିଓ ବଡ଼ ହେଲା ପରେ ଦେଖିଲି ସେ ସରଳ ଓ କୋମଳ) କାରଣ ବୋଉ ଥିଲା ମୋ ପାଇଁ ସ୍ନେହମୟୀ ମଧୁର। ମାମୁ ଟାଟାରୁ ଆସି ନେଇଯା'ନ୍ତି ବର୍ଷକୁ ଥରେ ଦୁଇଥର। ଏମିତି ଥରେ ବୋଉ ଓ ମୁଁ ଟାଟା ଯାଇଥିଲୁ। ବୋଧହୁଏ ଷାଣ୍ମାସିକ ପରୀକ୍ଷା ପାଖ ହୋଇଆସିଛି ବୋଲି, ୪-୫ ଦିନ ପରେ ବାପା ଯାଇ ନେଇ ଆସିଲେ। ବୋଉକୁ ଆଠ ଦଶ ଦିନ ପରେ ମାମୁ ଛାଡ଼ିଦେଇ ଆସିବେ, କଥା ଏଇଆ ଥିଲା। ହେଲେ ବୋଉକୁ ଛାଡ଼ି ବାପାଙ୍କ ପାଖେ ଏକା କେମିତି ଡର ଲାଗିଲା ଓ ଦିନକରେ ଜର ଆସିଲା। ସଂଗେ ସଂଗେ ଟାଟାକୁ ଟେଲିଗ୍ରାମ୍ ଗଲା। ବୋଉ ସଂଗେ ସଂଗେ ଫେରିଆସିଲା। ଟ୍ରେନ୍‌ରେ ରାତି ୯ଟା ପାଖାପାଖି ପହଞ୍ଚିବା କଥା। ବିଛଣାରୁ ଜରରେ ଥାଇ ବିଳିବିଳେଇଲା ପରି ପଚାରୁଥାଏ- 'ବୋଉ ଆସିଲା ?'

'କ'ଣ ହୋଇଛି ବାବୁଲାର !' ସ୍ୱର ଶୁଭିଲା ରାତିର ନିରବତା କାଟି। ଝଡ଼ ପରି ଘରକୁ ପଶିଆସିଥିଲା ବୋଉ। ତାକୁ ଦେଖି ସତେ ଅବା ପାଦତଳେ ଭୂଇଁ ପାଇଥିଲି। ଖପ୍ କରି ଡେଇଁ ପଡ଼ିଥିଲି ଓ ସେ ସରାଗରେ ଆଠ ବର୍ଷର ପୁଅକୁ କୋଳ କରି ନେଇଥିଲା। ଅନୁଭବ କରିଥିଲି ଯେ ଜର ପୂରା ଛାଡ଼ି ଯାଇଛି।

## (୨) ଅଗ୍ନିପରୀକ୍ଷା :

୧୯୫୭ ମସିହା ଦୀପାବଳୀ ପରେ ଅସ୍ଥାୟୀ ଘର ମିଳିଲା ଷ୍ଟିଲ୍ ଟାଉନର ୪ନମ୍ବର ସେକ୍ଟରରେ। ପ୍ରାୟ ଦେଢ଼ ବର୍ଷ ରହିବା ପରେ ସ୍ଥାୟୀ ଘର ମିଳିଲା ସେକ୍ଟର ୧୯ ନମ୍ବର ଏ' ବ୍ଲକ୍‌ରେ। ସେତେବେଳକୁ ଭଣଜା ରଜନୀକାନ୍ତ ନୂଆ ଅଫିସରଙ୍କ ପାଇଁ ଉଦ୍ଦିଷ୍ଟ ୨ ବେଡ଼ରୁମ୍‌ର ଘର ୧୯ ନମ୍ବର 'ବି' ବ୍ଲକ୍‌ରେ ପାଇ ରହିସାରିଥାନ୍ତି। ରାଜକିଶୋର ତାରାମଣିଙ୍କର ସବୁ ଭଣଜା ଭାଣିଜୀଙ୍କ ସହ ଗଭୀର ଭଲ ପାଇବାର ସଂପର୍କ। ବଡ଼ ଭଣଜାଙ୍କ ଘରକୁ ୫ ମିନିଟ୍ ବାଟରେ ଘର ମିଳିଥିବାରୁ ଦୁହିଁଙ୍କ ମନରେ ଅନେକ ଆସ୍ୱସ୍ତି ଓ ଆନନ୍ଦ। ଭଲରେ, ମନ୍ଦରେ ଭଣଜା ରଜନୀକାନ୍ତ, ଭଣଜାବୋହୂ

ଉମା ଆସି ଠିଆ ହୋଇଯା'ନ୍ତି । ମନରେ କେତେ ସାହସ ଆସେ । ହେଲେ ଏ ଯେଉଁ ବିପତ୍ତି ଆସିଲା ସେଥିରେ ଭଣଜା ବା ବୋହୂ କ'ଣ କରିପାରିବେ। ୧୯୫୯ ମସିହା ଅଗଷ୍ଟ ମାସ, ୧୦ମ ଶ୍ରେଣୀ ଆରମ୍ଭ ହୋଇଛି, ଦିନେ କାହ୍ନୁକୁ ଜର ହେଲା । ଚାହୁଁ ଚାହୁଁ ବଢ଼ିଲା, ଛାଡ଼ିବାର ଉପକ୍ରମ ନାହିଁ । ଇସ୍ପାତ ଜେନେରାଲ ହସ୍‌ପିଟାଲ ନୂଆ ଖୋଲିଥାଏ। ଡାକ୍ତରଖାନା ୱାର୍ଡ଼ରେ ରହିବାକୁ ହେଲା । ପାଖରେ ଯଶୋଦା । ଗାଧୋଇବା, ନିତ୍ୟକର୍ମ ଓ ରୋଷେଇ, ପଥି କରିବା ପାଇଁ ଯାହା ଘରକୁ ଯାଏ, ସବୁବେଳେ କାହ୍ନୁ ଉପରେ ତା'ର ଆଖି। ପାଣିପଟି ମୁଣ୍ଡରେ ସବୁବେଳେ ଦେବା ଓ ଦରକାର ବେଳେ ମୁଣ୍ଡ ଧୋଇଦେବା ନିୟମିତ କରେ। ଡାକ୍ତର କହିଲେ ଟାଇଫଏଡ଼। ଛନକା ପଶିଲା ବାପାମାଆଙ୍କ ମନରେ। ଦିନକୁ ଗୋଟେ କ୍ଲୋରେମାଇସେଟିନ୍, ଦୁଧ ପାଉଁରୁଟି, ସାଗୁ। ରାତି ଅନିଦ୍ରା ହୋଇ ଚାହିଁ ରହିଥାଏ ଯଶୋଦା। କାହ୍ନୁ ଅନେକ ସମୟରେ ଶୋଇଥାଏ ଚୁପ୍ ହୋଇ। ନ ହେଲେ ଅଚେତ ଥାଏ। କେତେବେଳେ ଆଖି ଖୋଲିଲେ ଦେଖେ, ବୋଉ ତାକୁ ଅନେଇ ରହିଛି। ମନରେ ପ୍ରତ୍ୟୟ ଆସେ। ସେ ଆଖି ଖୋଲିଲେ ବୋଉ ମୁହଁରେ ଭାବ ବଦଳିଯାଏ, ହେଲେ ଦୁର୍ବଳ ଆଖି ପତା ଧୀରେ ଧୀରେ ମୁଦି ହୋଇଆସେ। ଏମିତି ୨୧ ଦିନ ଗଲା ପରେ ଜର କମିଲା। ପ୍ରାୟ ମାସେ ଡାକ୍ତରଖାନାରେ ରହି ସ୍କୁଲର ଦଶହରା ଛୁଟୀ ପୂର୍ବରୁ ଘରକୁ ଫେରିଲା କାହ୍ନୁ। ଡାକ୍ତର ଜେ.ବି. ମିତ୍ର କହିଥାନ୍ତି ଏବେ ପୂରା ମାସେ ସ୍କୁଲ ଯିବାତ ଦୂରର କଥା, ବହି ମଧ୍ୟ ପଢ଼ିବ ନାହିଁ। ଘରେ ପୂର୍ଣ୍ଣ ବିଶ୍ରାମ। ଭାଉଜ ପ୍ରାୟ ଅଧିକାଂଶ ଦିନ କେତେ ଶ୍ରଦ୍ଧାରେ ଆଣୁଥାନ୍ତି ମାଂସ ଷ୍ଟିଉ, କଷ୍ଟାର୍ଡ଼ ନ ହେଲେ ଅଣ୍ଡାର ପୁଡ଼ିଙ୍ଗ୍ (ଯାହା ନାଁ ସେ କେବେ ଶୁଣି ନଥିଲା) ଓ କହନ୍ତି ଯେତିକି ହଜମ କରି ହେବ ଧୀରେ ଧୀରେ ପ୍ରୋଟିନ ଖାଇଲେ ଦେହରେ ବଳ ହେବ।

ପରେ କାହ୍ନୁ ଜାଣିଲା, ସେ ନିସ୍ତେଜ ହୋଇ ଅଧିକାଂଶ ସମୟରେ ଶୋଇ ରହିଥିବା ଯୋଗୁ, କିମିତି ବାପା ବୋଉ ଆଶା ଛାଡ଼ି ସବୁ ଭଗବାନଙ୍କୁ ସମର୍ପଣ କରିଦେଇଥିଲେ।

ଆଉ ପ୍ରାୟ ଦେଢ଼ ବର୍ଷ ପରେ ଯେଉଁଦିନ ମାଟ୍ରିକ୍ ପରୀକ୍ଷାର ଫଳ ବାହାରିଲା। ୧୯୬୧ ଏପ୍ରିଲ ମାସ ୨୦ ତାରିଖ। ଗାଁରେ ଥାନ୍ତି ମା' ପୁଅ। ବାପ ଚାକିରି ଜାଗାରେ। ଖଞ୍ଜାର ନିତ୍ୟାନନ୍ଦ ବଡ଼ବାପା କଟକରୁ ଖବରକାଗଜ ଆଣି ହସି ହସି ଭାଇ ବୋହୂଙ୍କୁ ଦେଲେ- "ତାରା ! ତୁମ ପୁଅ ଓଡ଼ିଶାର ପ୍ରଥମ ଦଶ ଜଣଙ୍କ ଭିତରେ।" ସେତେବେଳେ ଯଶୋଦାର କୋହ, ସବୁ ବନ୍ଧ ଭାଙ୍ଗି ଦେଲା। ତା'ର ଭଗବାନଙ୍କ ପାଖେ କୃତଜ୍ଞତା ଜଣାଇବା, କାନ୍ଦ, କୋହ, ଲୁହ ଭିତରେ କାହ୍ନୁ ବୁଝିଲା ବୋଉ

କେମିତି ସେତେ ଦୂରକୁ ଭାବି ପାରିଲା, କାତମାରି ଦେଇଥିଲା । ବୋଧପୁରର ଗ୍ରାମଦେବତା ନୃସିଂହନାଥଙ୍କ ପାଖେ ଯଶୋଦା ମାନସିକ କରିଥିଲା ପୁଅ ଟାଇଫଏଡ୍‌ରେ ଶୋଇଥିବାବେଳେ- "ପ୍ରଭୁ ! ଷୋଳ ସେର ଦୁଧ ସ୍ନାନ କରାଇବି । ପୁଅକୁ ମୋର ଆରୋଗ୍ୟ କରି ମାଟ୍ରିକ୍‌ରେ ଭଲ ପାସ୍ କରାଇଦିଅ ।" ୧୯୬୩ ମସିହାରେ ପୁଅକୁ ନେଇ ସେ ବୋଧପୁର ଯାଇ ଠାକୁରଙ୍କ ପାଖେ ଦୁଧ ସ୍ନାନ କରାଇ ଆସିଥିଲା ।

## (୩) କାହ୍ନୁର ସନ୍ତୋଷ ହିଁ ଯଶୋଦାର ଆନନ୍ଦ :

ଥଟ୍ଟା-ସମ୍ପର୍କର ବନ୍ଧୁବାନ୍ଧବମାନେ କହୁଥିଲେ ତାରାମଣି ମାଛରଙ୍କୁଣୀ । ୮୮ ବର୍ଷ ବୟସରେ ସେପାରିର ଦୂତକୁ ଅପେକ୍ଷା କରି ସୁଦ୍ଧା, ପୁତୁରା ପଞ୍ଚୁ (ଗିରିଜା)କୁ ବାପଘର ନିଜ ବାରି ପୋଖରୀରୁ ମାଛ ମରାଇ ପଠାଇବାକୁ ବରାଦ କରୁଥିଲା ସିଏ । ତା' ସଙ୍ଗରେ ରହି ବାବୁଲା ବି ମାଛରଙ୍କା ।

ସିଏ ୧୯୬୦ ଏକାଦଶ ଶ୍ରେଣୀ ବେଳର କଥା । ପଇସାର ଟାଣଟୁଣ ଥାଏ । ସେତେବେଳେ ଅଫିସରମାନେ ମଧ୍ୟ ପ୍ରଥମେ ମାସକୁ ୩୫୦ ଟଙ୍କା ଭିତରେ ଦରମା ପାଉଥିଲେ । ଓ୍ୱାର୍କରମାନଙ୍କ କଥା ନ କହିଲେ ଭଲ । କିରାଣୀ ଓ ଅପରେଟରମାନେ ଶହେଦଶ, ପିଅନ ଓ ଖଲାସିମାନେ ଅଶୀ-ଅଥଚ ଇଞ୍ଜିନିୟରିଂ ମେଡ଼ିକାଲ ପଢ଼ିବା ପାଇଁ ମାସକୁ ୧୫୦ ରୁ ୧୮୦ ଯାଏ ଖର୍ଚ୍ଚ । ବାବୁଲା ସ୍କୁଲରେ ପାଠ ପଢୁଛି ବୋଲି ବଡ଼ ଭାଇଙ୍କୁ ତ ସିଏ ଆଉ ପଇସା ମାଗିବେନି । କୌଣସି ପ୍ରକାରେ ସଂସାରର ନାଆ ବାହି ନେଉଥିଲେ ବାପା । ଡାଲି ସାଙ୍ଗେ ଦିନେ ଦିନେ ଗୋଟିଏ ତରକାରୀ ହୋଇଥିଲେ ବି ବୋଉ ହାତ ବାଜି ସିଏ ହୋଇଥାଏ ଅମୃତ । ସେଇଥିରେ ସନ୍ତୁଷ୍ଟ ଥାଇ ପୁରୀର ଛଅତିଅଣ, ନଅ ଭଜାକୁ କେବେ ଝୁରି ନାହିଁ ବାବୁଲା । କାରଣ ଅୟସ, ଅର୍ଥର ପ୍ରାଚୁର୍ଯ୍ୟ ନଥିଲେ ବି ଆଦର, ଗେହ୍ଲା ଓ ସ୍ନେହର ପ୍ରାଚୁର୍ଯ୍ୟରେ ସେ ଥାଏ ସବୁବେଳେ ବିଭୋର ।

ମାସରେ ଦୁଇତିନି ଥର ଆସେ ପାଏ ଲେଖା ମାଛ ବା ମାଂସ । ବାବୁଲା ୩,୪ ଖଣ୍ଡ ମାଛ ଖାଇଲେ ବୋଉ ଖାଏ ଖଣ୍ଡେ ଦି'ଖଣ୍ଡ । ବାପା ନିରାମିଷାଶୀ । ମାଛ ବା ମାଂସ ଅଦ୍ଭୁତ ରାନ୍ଧେ ବୋଉ । ଟାଟାରୁ ଶିଖିଛି । ମାଂସ ପାଇଁ ପିଆଜରସୁଣ ଅଦା ସହ ସେ ଦିଏ ସବୁ ମସଲାକୁ ଭାଜି କରି ବାଟିଥିବା ମସଲା । ସେ ଏକ ଅନନ୍ୟ ସ୍ୱାଦ । ସେଦିନ ବୋଉର ବରାଦରେ ଆସିଥିଲା ମାଂସ ପାଏ । ପ୍ରିଟେଷ୍ଟ ପାଖ ହୋଇ ଆସିଲାଣି । ଅନ୍ୟମନସ୍କ ଥାଇ ଖାଇ ବସିଥିଲା ବାବୁଲା । ବୋଉ ପାଖରେ ଥାଇ

ବଳୋଉ ଥିଲା । ବହୁତ ସୁଆଦ ହୋଇଛି ବୋଲି ଆଗରେ ପଛରେ କେତେଥର ମାଗିଲା ସିଏ । କେତେ ଭାତ, କେତେ ତରକାରୀ ଖାଇଥିବ କେଜାଣି । କେତେବେଳ ପରେ ସେ ସଚେତନ ହେଲା । ହାତ ନ ଧୋଇ ରୋଷେଇ ଘରେ ପଶି ଦେଖିଲା ମାଂସ ତରକାରୀ କରେଇ, ବିଲେଇ ଚାଟିବା ପରି ପରିଷ୍କାର । ମୁରୁକି ହସି ବୋଉ କହୁଛି - "ଆର ମାସରେ ଆସିଲେ ମୁଁ ଖାଇବି ! ତୁ ବ୍ୟସ୍ତ ହୁଅ ନାହିଁ ।"

## (୪) କାହ୍ନୁ ମୋର ପାଶେ ଥାଉ :

ଘୋଷାପାଠକୁ ଡରି, ମୁର୍ଦ୍ଧାରକୁ ଡ଼ରି, ଡାକ୍ତରୀରେ ନାଁ ଲେଖାଇଲି ନାହିଁ ୧୯୬୩ରେ । ଇଞ୍ଜିନିୟରିଂ ପାଇଁ ଦରଖାସ୍ତ ବି ଦେଇ ନଥିଲି । ଭାଇଭଉଣୀଙ୍କ ଭିତରେ ସବା ବଡ଼, ବଡ଼ ପିଉସୀଙ୍କ ପୁଅ ରଜନୀ ଭାଇ, ୧୯ ବର୍ଷ ବୟସରେ ବନାରସ ବିଶ୍ୱବିଦ୍ୟାଳୟରୁ ପଦାର୍ଥବିଦ୍ୟାରେ ଏମ.ଏସସି. ପରେ ଇଣ୍ଡିଆନ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ସାଇନ୍‌ସ, ବାଙ୍ଗାଲୋରରୁ ୧୯୫୫ ମସିହାରେ ଇଞ୍ଜିନିୟରିଂ ପାସ୍ କରି ଆଇ.ଆଇ.ଟି ଅଧ୍ୟାପକ, ଟିସ୍କୋ ଜାମସେଦ୍‌ପୁର୍ ଓ ପରେ ୧୯୫୮ ରେ ରାଉରକେଲା ଷ୍ଟିଲ୍ ପ୍ଲାଣ୍ଟରେ ଚାକିରି କରୁଥାନ୍ତି । ନିଜ ବଡ଼ଭାଇ ଉମେଶଚନ୍ଦ୍ର ସେଇ ବର୍ଷ ଇଞ୍ଜିନିୟରିଂ ପାସ୍ କରିଥାନ୍ତି ଓ ଉପର ବାବାଜି ଭାଇ (ସରୋଜକୁମାର) ରାଉରକେଲାରେ ଇଞ୍ଜିନିୟରିଂ ପଢୁଥାଏ । ମୋର ଡାକ୍ତରୀ ପଢ଼ିବା ପାଇଁ ପରିବାରରେ ନିଷ୍ପତ୍ତି ନିଆ ହୋଇଥିଲା । ଶେଷ ମୁହୂର୍ତ୍ତରେ ଦୌଡ଼ ପ୍ରତିଯୋଗିତାରୁ ଓହରି ଯାଇଥିଲି । ବର୍ଷଟାଏ ପୁଣି ରେଭେନ୍‌ସାରେ ଗଣିତ ଅନର୍ସ ପଢ଼ି ୧୯୬୪ରେ ଇଞ୍ଜିନିୟରିଂ ପାଇଁ ଫର୍ମ ପୂରଣ କଲି । ସେଇ ବର୍ଷ ଅଧିକାଂଶ କଲେଜରେ ୪ ବର୍ଷ କୋର୍ସ ବଦଳି ୫ ବର୍ଷ ହୋଇଯାଇଥାଏ ପ୍ରି-ଇଉନିଭରସିଟି ବା ଦ୍ୱାଦଶ ଶ୍ରେଣୀ ପରେ । ଗୋଟିଏ କଲେଜ, ସୁରତ (ଗୁଜୁରାତ) ଆର.ଇ.ସି.ରେ ଆଇ.ଏସସି. ପରେ ୩ ବର୍ଷିଆ କୋର୍ସଟିଏ ରଖିଥାନ୍ତି । ଅଳ୍ପ ସିଟ୍, ୪ ବର୍ଷିଆ ପାଠକୁ ତିନି ବର୍ଷରେ ଶେଷ କରିବାର ଯୋଜନା । ସେଠାକୁ ମଧ୍ୟ ଦରଖାସ୍ତ କରିଥିଲି ।

ମୋର ଅଙ୍କ ଓ ଇଂରାଜୀ ପ୍ରିୟ ବିଷୟ ହେଲେ ମଧ୍ୟ ମେଡ଼ିକାଲ ପଢ଼ିବା ସ୍ଥିର ହୋଇଥିବା ଯୋଗୁ ଅଙ୍କ ବହି ଧରୁ ନଥିଲି । ଏଣୁ ପ୍ରି ଇଉନିଭରସିଟିରେ ପ୍ରଥମ ଶ୍ରେଣୀ ସତ୍ତ୍ୱେ ଅଙ୍କରେ ଅପେକ୍ଷାକୃତ କମ୍ ନମ୍ବର ଥାଏ । ବୁର୍ଲାରେ ଡିଭିଜନ ଅନୁସାରେ ମେରିଟ୍ ଲିଷ୍ଟ ହୁଏ । ରାଉରକେଲାରେ ଇଂରାଜୀ, ଅଙ୍କ, ପଦାର୍ଥ ଓ ରସାୟନ ବିଜ୍ଞାନର ନମ୍ବର ଦେଖି ମେରିଟ୍ ଲିଷ୍ଟ । ବୁର୍ଲାରେ ପ୍ରଥମ ଲିଷ୍ଟରେ ସିଟ୍ ପାଇବା ପରେ ରିସ୍କ ନ ନେବା ପାଇଁ ବାପାଙ୍କ କହିବା ଅନୁଯାୟୀ ଦୁହେଁ ଯାଇ ନାଁ ଲେଖାଇ ଆସିଲୁ ।

ତା'ପରେ ଆସିଲା ସୁରତ୍‌ରେ ତିନିବର୍ଷିଆରେ ସିଟ୍ ପାଇବାର ଚିଠି। ମୁଁ ବାପାଙ୍କୁ କହିଲି "ମେଡ଼ିକାଲ ଛାଡ଼ି ଯେଉଁ ୨ ବର୍ଷ ହରାଇଛି ତା' ଫେରି ପାଇବି। ଆପଣ ଯାଇ ବୁର୍ଲାରୁ ଟ୍ରାନ୍‌ସଫର ସାର୍ଟିଫିକେଟ୍ ନେଇ ଆସନ୍ତୁ।" ବାପା ସଙ୍ଗେ ସଙ୍ଗେ ଚାଲିଗଲେ ବୁର୍ଲା।

ତା'ପରେ ବୋଉର ରୂପ ଦେଖେ କିଏ। କାନ୍ଦ ରାଗର ଅଦ୍ଭୁତ ସିମ୍ଫୋନିରେ ସିଏ ଏକ ଅନ୍ୟରୂପ, ଯାହା କେବେ ଦେଖି ନଥିଲି ମୁଁ। ଉମା ଭାଉଜ ମହତ ମଣିଷ, ଅନନ୍ୟ ଶୁଭାକାଂକ୍ଷୀ ମୋର, ସଂଭ୍ରମତାର ପ୍ରତୀକ। ତାଙ୍କୁ ବୋଉ, ବଡ଼ ଭଣଜା ବୋହୂ ବୋଲି ଅନେକ ଶ୍ରଦ୍ଧା କରେ। ସେ ଯେତେବେଳେ ବୁଝାଇବାକୁ ଚେଷ୍ଟା କଲେ "ମାଇଁ, ବାବୁଲାର ଭବିଷ୍ୟତ କଥା। ଦୁଇ ବର୍ଷ ରକ୍ଷା ହୋଇଯିବ।" ବୋଉତ ଡ଼ାଆଣୀ ଲାଗିବା ପରି ହେଲା। "ଉମା ! ତୁ ତା' ମୁଣ୍ଡ ବିଗାଡ଼ିଛୁ। ମୋ ପୁଅ ମୋ ଆଖି ଆଗରେ ରହିବ। ସେ ରାଉରକେଲାରେ ପଢ଼ିବ। ନ ହେଲେ ନାହିଁ।" ତା'ର ସେପରି ରୂପରେ ଭାଉଜ ଓ ମୁଁ ଶଙ୍କିଗଲୁ ଓ ମୁଁ ନିଷ୍ପତ୍ତି ନେଲି, ବୁର୍ଲାରୁ ତ ବାପା ଟିସି ଆଣି ଫେରୁଥିବେ। ଯାହା ଭାଗ୍ୟରେ ଥିବ- ମୁଁ ରାଉରକେଲାର ଦ୍ୱିତୀୟ ଲିଷ୍ଟ ପାଇଁ ଅପେକ୍ଷା କରିବି। (ପରେ ଜାଣିଲି ଯେ ସୁରତ୍ କୋର୍ସ ଭାରି କଷ୍ଟ। ମୋର ଉପର ବ୍ୟାଚ୍‌ର ବନ୍ଧୁ ବି.ଏସସି. ପାଶ୍ ପରେ ଯାଇ ସୁଦ୍ଧା ତିନିବର୍ଷ ପାଠ ଚାରିବର୍ଷରେ ସାରିଲା।)

ଆଗରୁ କଥା ଥିଲା ବାପା ଝାରସୁଗୁଡ଼ାରେ ଅପେକ୍ଷା କରିଥିବେ ମୁଁ ପହଞ୍ଚି ଦୁହେଁ ବମ୍ବେ ମେଲ୍ ଧରି ସୁରତ ପାଇଁ ଯାତ୍ରା କରିବୁ। ଅଗତ୍ୟା ଝାରସୁଗୁଡ଼ା ଯାଇ ବାପାଙ୍କୁ ଫେରାଇ ଆଣିଲି ଓ ପରେ ସିଟ୍ ପାଇ ରାଉରକେଲାରେ ପଢ଼ିଲି। କାହ୍ନୁ ଯଶୋଦାର ଆଖି ପାହାନ୍ତାରେ ରହିଲା। ଭଲ ପାଠ ପଢ଼ିଲା, ସାହିତ୍ୟ ନାଟକ ଆଦି କରି ମଧ୍ୟ ସୁନାମ ପାଇଲା।

## (୫) କୋଇଲିଲୋ କେଶବ ଯେ ମଥୁରାକୁ ଗଲା :

୧୯୬୯ ରେ ପ୍ରଥମ ଶ୍ରେଣୀ ଅନର୍ସ ସହ ଇଲେକ୍ଟ୍ରିକାଲ ଇଞ୍ଜିନିୟରିଂ ପାସ୍ କଲା ପରେ ଚାକିରୀ ପାଇଁ ଅପେକ୍ଷା। ମୋର ମୂଳରୁ ଆଶା ଥିଲା ରାଜ୍ୟ ସରକାରଙ୍କ ପାଖେ ଆସିଷ୍ଟାଣ୍ଟ୍ ଇଞ୍ଜିନିୟର ଚାକିରୀ ମିଳିଯିବ, କାରଣ ୧୯୬୮ ରେ ମାର୍କ ଅନୁଯାୟୀ ଇଲେକ୍ଟ୍ରିକାଲ ପିଲାମାନଙ୍କୁ ଚାକିରୀ ମିଳିଯାଇଥିଲା, ଯଦିଓ ଅନ୍ୟମାନଙ୍କୁ ଅପେକ୍ଷା କରିବାକୁ ପଡ଼ିଥିଲା। ଆମବେଳକୁ ଇଲେକ୍ଟ୍ରିକାଲକୁ ମଧ୍ୟ ଚାକିରୀ ନାହିଁ। କେତେ ସାଙ୍ଗ ଉଚ୍ଚଶିକ୍ଷା ପାଇଁ ଚାଲିଗଲେ। ବୋଉ ତ କହିଛି 'ତିନିକଣଙ୍କୁ ସମାନ ଦେଖିବୁ'। ମୁଁ ଅଗତ୍ୟା ଉଚ୍ଚଶିକ୍ଷା ପାଇଁ ବିଦେଶ ବା ଓଡ଼ିଶା ବାହାରକୁ ନଯାଇ ଅପେକ୍ଷା କଲି,

ମନରେ ଅନେକ ହତାଶା ସତ୍ତ୍ୱେ। ଏତିକିବେଳେ ବିଜ୍ଞାପନ ବାହାରିଲା ହିନ୍ଦୁସ୍ଥାନ ଷ୍ଟିଲ୍‌ରେ ପ୍ରଥମଶ୍ରେଣୀ ଅନର୍ସ ପିଲାଙ୍କ ପାଇଁ କିଛି ପୋଷ୍ଟ। ଭାଇ (ରଜନୀକାନ୍ତ) ଖବରଦେଲେ ଓ ଦରଖାସ୍ତ ପୂରଣ କରିଦେଲେ। ଇଣ୍ଟରଭିଉ ଅକ୍ଟୋବର ୧୯ରେ ହୋଇଥିଲା। ଡିସେମ୍ବର ପ୍ରଥମ ସପ୍ତାହରେ ତଳ ଭଉଣୀ ଟିକିର ବାହାଘର ପରେ ରାଉରକେଲା ଫେରି ଆସିଲି। ୧୫ ତାରିଖରେ ଆସିଲା ଚାକିରୀ ପାଇଥିବାର ଚିଠି, ହେଲେ ଦୁର୍ଗାପୁର ପଶ୍ଚିମବଙ୍ଗରେ। ଭାଇ କହିଲେ କମ୍ପାନୀ ସ୍ଥିର କରିଛି ନିଜ ପ୍ରଦେଶରେ ନଦେଇ ଅନ୍ୟ ସ୍ଥାନରେ ନେବା ପାଇଁ। ଅନ୍ୟ ଭାଷାଭାଷୀ ଏଠାକୁ ଆସିବେ ଓ ଓଡ଼ିଆମାନେ କମ୍ପାନୀର ଅନ୍ୟ କାରଖାନା ଭିଲାଇ ବା ଦୁର୍ଗାପୁର ଯିବେ।

ଏଥର କିନ୍ତୁ ବୋଉର ଅନ୍ୟ ରୂପ। କାହ୍ନୁ ମଥୁରାକୁ ଯିବ। ଭବିଷ୍ୟତ କଥା। ଦେଶରେ ଚାକିରୀ ନାହିଁ। ବାରଣ କେମିତି କରିବ ସିଏ। ମୁଁ ୨୭ ତାରିଖରେ ରାଉରକେଲାରୁ ଦୁର୍ଗାପୁର ଯିବା ପାଇଁ ଅନୁକୂଳ କଲି। ମା' ମାନେ ଝିଅ ବିଦା ପାଇଁ ଦିନେ ଦି'ଦିନ କାନ୍ଦନ୍ତି। ମୁହଁ ଶୁଖାନ୍ତି। ବୋଉ ମୋର ଦୁର୍ଗାପୁରକୁ ଯିବା ଖବର ପାଇବା ଠାରୁ ହଠାତ୍ ନିର୍ବାକ୍ ହୋଇଗଲା। ମାନସିକ ଡ଼ିପ୍ରେସନ୍ ରୋଗୀ ବା ଏଇ ପରସ୍ତେ ବରଷିଯିବ - ମେଘଡଙ୍କା ଆକାଶ ପରି ମୁହଁ ସବୁବେଳେ। ଅଳସେଇ ପୁଣି ଲୋଟଣୀ ପାରା ପରି ସକାଳୁ ରାତି ଯାଏ ବିଭିନ୍ନ ପ୍ରକାର ସ୍ୱାଦିଷ୍ଟ ଖାଦ୍ୟମାନ-ମାଛ, ମାଂସ, ଯେତେ ଯେତେ ପ୍ରକାରର ପିଠା-ସେଇ ବାରଦିନରେ ଯେମିତି ଚାରିବର୍ଷ ପାଇଁ ଖୁଆଇ ପକାଇବ ପୁଅକୁ। ବିଦେଶ ଯାଉଛି ପୁଅ, କେତେ ଯୁଗ ପରେ ଫେରିବ ଯେମିତି। ତା ମୁହଁକୁ ଦେଖି କଥା କହିବାକୁ ଡର ମାଡୁଥାଏ। ଯେମିତି କଥା ପଦେ କହିଲେ କୋହ ଉଚ୍ଛୁଳି ଅସମ୍ଭାଳ ହୋଇଯିବ।

ଆସିଲା ୨୭ ତାରିଖ। ପୂଜା ପ୍ରାର୍ଥନା। ଓଲଟ ଚକୁଳି ଖୁଆଇ ଷ୍ଟେସନକୁ ସାଙ୍ଗରେ ଗଲା। ଭାଇ ତାଙ୍କ କାର୍‌ରେ ମୋତେ ଛାଡ଼ିବାକୁ ବାପାବୋଉଙ୍କୁ ସାଙ୍ଗରେ ନେଲେ। ମୋର ସାଙ୍ଗ ଅକ୍ଷୟ କୁମାର ସାହୁ ରାଉରକେଲାରେ ତା' ବଡ଼ଭାଇଙ୍କ ପାଖରେ ଥାଏ। ଆମେ ଦୁହେଁ ଦୁର୍ଗାପୁରରେ ଚାକିରୀ ପାଇ ଏକାଠି ଯାଉଥାଉ। ବୋଉ ଷ୍ଟେସନ୍‌ରେ ଅକ୍ଷୟର ହାତଧରି ପକାଇଲା। 'ବାବୁ ତମକୁ ମୋ ପୁଅ ଲାଗିଲା।' ବୋଉକୁ ମୁଁ ସେତେବେଳେ ଅନେଇଲି। ବିଶୁଷ୍କ ପାଗେଳୀ ଚେହେରା, ଶାଢୀକାନୀ ତଳେ ଲୋଟିଛି। ପାଦରେ ଚପଲ ନାହିଁ। ମୁଣ୍ଡବାଳ ଭୂତମୁଣ୍ଡି ପରି ଉଡୁଛି। ଆଖିରେ ଲୁହ ଡବଡବ, ବହି ଯାଇ ପାରୁନାହିଁ ସତେ ଅବା କାହା ଆଦେଶରେ !

ଦୁର୍ଗାପୁରରେ ମୋ ମନ ଲାଗିଲା ନାହିଁ। ବୋଉର ମଧ୍ୟ ମୋ ଚିନ୍ତାରେ ବ୍ଲଡ ପ୍ରେସର ହେଲା। ଭାଉଜଙ୍କ ସାଙ୍ଗ ମିସ୍ ନିରୂପମା ପଟ୍ଟନାୟକ, ଯିଏ ଚାକିରୀ

ଶେଷରେ ଜିଏମ୍ ହୋଇ ଅବସର ନେଲେ, ସେତେବେଳେ ପର୍ସନେଲ ଅଫିସର ଥିଲେ। ଭାଉଜ, ବୋଉକୁ ନେଇ ତାଙ୍କ ଘରକୁ ମୋ ବଦଳୀ ପାଇଁ ଅନୁରୋଧ କରିବାକୁ ଯାଇଥିଲେ। ଶେଷରେ ବାପା, ରଜନୀଭାଇ, ଭାଉଜଙ୍କ ଅକ୍ଳାନ୍ତ ପରିଶ୍ରମ ଫଳରେ ପାଞ୍ଚବର୍ଷ ସାତମାସ ପରେ ଫୋରମ୍ୟାନ ଗ୍ରେଡ୍‌ରେ ଅଢେଇବର୍ଷର ସିନିୟରିଟି ହରାଇ ମୁଁ ବଦଳି ହୋଇ ଆସିଲି ରାଉରକେଲା। ଅକ୍ଷୟ, ମାଉସୀଙ୍କୁ ଦେଇଥିବା କଥା ରକ୍ଷା କରି ଦୁର୍ଗାପୁରରୁ ହାଓଡା ଯାଏ ଆସି, ସବୁ ଜିନିଷ ପତ୍ର ଗାଡ଼ିରେ ଚଢ଼େଇ ବିଦା କରିଗଲା। କେତେଜଣ ମନ୍ତବ୍ୟ ଦେଲେ ମା' କଥାରେ କିଏ ଏ ଯୁଗରେ ଚାକିରୀରେ ସିନିଅରିଟି ଛାଡ଼ିଦିଏ। ସିଏ ବି ଅଦ୍ଭୁତ କଥା। ପରଚେକ୍ ଡିପାର୍ଟମେଣ୍ଟରେ ଇଞ୍ଜିନିୟର ନେବେ ବୋଲି ଗୋଟିଏ ଉପର ପୋଷ୍ଟ ପାଇଁ ୧୯୭୮ ରେ ଖୋଲା ବିଜ୍ଞାପନ ବାହାରିଥିଲା। ମୁଁ ଦରଖାସ୍ତ ଦେଇ ପ୍ରାୟ ୪୦ କଣଙ୍କ ମଧ୍ୟରୁ ଯୋଗ୍ୟ ବିବେଚିତ ହେଲି। କେବଳ ହରାଇଥିବା ସିନିଅରିଟି ଫେରିପାଇବା ନୁହେଁ, ଅନେକ ଉପରବ୍ୟାଚ ଲୋକଙ୍କୁ ମୁଁ ଏହା ଦ୍ୱାରା ଟପି ଯାଇଥିଲି। ସେତିକି ନୁହେଁ, ପରେ ମଧ୍ୟ କେତେଥର, ଅନେକ ସିନିଅରମାନଙ୍କୁ ଯୋଗ୍ୟତାର ମୂଲ୍ୟାଙ୍କନ ବଳରେ ଟପି ମୁଁ ପ୍ରମୋସନ ପାଇଥିଲି। ମୁଁ ନିରୋଳାରେ ଭାବେ ଅନେକ ସମୟରେ, ସୁରତ୍‌ର ପାଠ ୩ ବର୍ଷରେ ସତରେ ସାରି ପାରିଥାନ୍ତି ! ପୁଣି ଦୁର୍ଗାପୁରରେ ଥିଲେ ତ, ବେଶୀହେଲେ ଡିଜିଏମ୍.ଯାଏ ଉଠିଥାନ୍ତି, ରାଉରକେଲାରେ ପାଇଥିବା ଉଚ୍ଚ ପୋଷ୍ଟ, ମୁଁ କଦାପି ପାଇ ପାରି ନଥାନ୍ତି। ଏସବୁ ବୋଉର ନିର୍ମଳ ଭଲ ପାଇବାର ବଳ, ଆଶୀର୍ବାଦର ଫଳ ନୁହେଁ ତ ଆଉ କ'ଣ ?

## (୬) ମନ କିମ୍ବା ପାପ ଛୁଏଁ :

ରାଉରକେଲା ଷ୍ଟିଲ ପ୍ଲାଣ୍ଟରେ ଯୋଗ ଦେଲି ଜୁଲାଇ ୧୯୭୫ରେ। ସେପ୍‌ଟେମ୍ବର ମାସ ୧୧ ଗୁରୁବାର ସକାଳେ କନ୍ୟାଲକ୍ଷ୍ମୀ ଜନ୍ମ ହେଲା। ୧୯ ନମ୍ବର ବାପାଙ୍କ ଘର ଛାଡ଼ି, ଆମେ ୨୦ ନମ୍ବର ସେକ୍ଟର ବି-୮୦, ଟୁ ବେଡ୍ ରୁମ୍ ଘରକୁ ଗଲୁ ଓ ରହିଲୁ ୧୯୮୫ ଜାନୁୟାରୀ ଯାଏ। ତାପରେ ପୁଣି ୧୯ ନମ୍ବର, ସି-୨, ଥ୍ରୀ ବେଡ ରୁମ୍ ଘରକୁ ଆସିଲୁ। ବୋଉର କାମ କମିଲା ଧୀରେ ଧୀରେ। କାମ ନଥିଲେ ଚିନ୍ତା ତାର କେବଳ ପୁଅ, ନାତି ନାତୁଣୀଙ୍କ ପାଇଁ।

୧୯୭୮ ରେ ପରଚେକ୍ ଡିପାର୍ଟରେ ସିନିଅର ପରଚେଜ ଅଫିସର ଭାବେ ପଦୋନ୍ନତି ପାଇ ଯୋଗଦେଲି ଜୁନ୍ ୧୪ରେ। ନୂଆ ସିଲିକନ୍ ଷ୍ଟିଲ ପ୍ରୋଜେକ୍ଟ ପାଇଁ ଅନେକ କାମ। ସବୁଦିନ ପ୍ରାୟ ଡେରୀ ହୁଏ। ସକାଳେ ୮:୩୦ ରେ ଭାତ ଖାଇ

ଯାଏ। ଫେରୁ ଫେରୁ ପ୍ରାୟ ରାତି ୧୦। ସ୍କୁଲରେ ପାଠ ପଢ଼ିବା ବେଳେ ଫେରିବା ବେଳ ହେବାର ଢ଼େର ପୂର୍ବରୁ ଗେଟ୍‌କୁ ଧରି ମୋ ବାଟ ଚାହିଁ ରହିବା ଅଭ୍ୟାସ ତଥାପି ଯାଇ ନଥାଏ ବୋଉର। ୧୯୭୮ ସେପ୍‌ଟେମ୍ବର ମାସର ପ୍ରଥମ ସପ୍ତାହ ହେବ ଯାହା ମନେପଡ଼ୁଛି। ସେଦିନ ଛୁଟୀ ଥାଏ ଅଫିସ୍, ଜନ୍ମାଷ୍ଟମୀ ବୋଲି। ସିଲିକନ୍ ପ୍ଲାଣ୍ଟ ପ୍ରୋଜେକ୍ଟର ମିଟିଂ ପାଇଁ ଡକ୍ଟର ଦତାର, ଏମ୍.ଡ଼ି. ରାଉରକେଲା ହାଉସରେ ବ୍ୟବସ୍ଥା କରାଇଥାନ୍ତି। ବିଦେଶରୁ ଆସୁଥାନ୍ତି କମ୍ପାନୀମାନେ। ତାଙ୍କୁ ଉଚିତ୍ ବ୍ୟବହାର କରିବାକୁ ହେବ। ଆମେ ସେଦିନ ମିଟିଂ ପାଇଁ ସକାଳ ଦଶଟାରୁ ଯାଇଥାଉ। ରାଉରକେଲା ହାଉସ୍ ଆମ ଘରୁ ପାଞ୍ଚମିନିଟର ବାଟ, ଚାଲିକରି ଗଲେ। ସ୍କୁଟରରେ ଯାଇଥିଲି-ସେଦିନ ଜରୁରୀ ମିଟିଂ ଓ ପ୍ରାଇସ (ମୂଲ୍ୟ) ଖୋଲା ହେବାର ଥାଏ। ଡିପାର୍ଟମେଣ୍ଟ ମୁଖ୍ୟ ଭି.ଆର. କୃଷ୍ଣସ୍ୱାମୀ, ଫାଇନାନ୍‌ସ ଉପମୁଖ୍ୟ ରାଧା ମନୋହରନ୍ ସବୁ ବଡ ଅଫିସର ଥା'ନ୍ତି-ମୁଁ ସେମାନଙ୍କ ମୁଖ୍ୟ ସହାୟକ। କୃଷ୍ଣସ୍ୱାମୀ ସ୍ଥିର କରିଥାନ୍ତି ସେଇଦିନ ପ୍ରାଇସ୍ ଖୋଲାଯିବ। ସେ ମୋର ମାଟେରିଆଲ୍‌ସ ବୃତ୍ତି ପାଇଁ ଗୁରୁ ଓ ରୋଲ ମଡେଲ। ଆଜିକାଲି ତାଙ୍କ ପରି ଦକ୍ଷ ସ୍ୱାଧୀନଚେତା ଦେଖିବାକୁ ମିଳିବେ ନାହିଁ ଓ ରାଜନୈତିକ ପ୍ରଭାବ ଭିତରେ ସେପରି ରୋକ୍‌ଠୋକ୍ କାର୍ଯ୍ୟକରି କେହି ତିଷ୍ଠି ପାରିବେ ନାହିଁ। ସେ ଥା'ନ୍ତି ନଛୋଡବନ୍ଧା, ଅନ୍ୟମାନେ ନିରବ ସମର୍ଥକ। ରାତି ୧୦ ବାଜିଲା। ଡିନର ଖିଆ ସରିଲାଣି। ବିଦେଶୀକମ୍ପାନୀ ମାନେ ତଥାପି ଅନେକ କଥାରେ ସ୍ୱୀକୃତି ଦେଉନଥାନ୍ତି। କୃଷ୍ଣସ୍ୱାମୀ ଘୋଷଣା କଲେ "ଆଜି ଆପଣମାନଙ୍କୁ ସହଯୋଗ କରି ପ୍ରାଇସ୍ ଦେବାକୁ ହେବ। ଆଜି ରାତି ଯେତେ ହେଉ, 'ପ୍ରାଇସ୍' ଖୋଲାହେବ"। ସବୁ କାମ ସାରି ଘରକୁ ଫେରିଲାବେଳକୁ ରାତି ଅଢ଼େଇଟା। ରାସ୍ତା, ସହର ନୀରବ, ନିଛାଟିଆ। ସମସ୍ତେ ଶୋଇ ସାରିଛନ୍ତି। ଏକାକିନୀ ଗେଟ୍ ଧରି ଅପଲକ ନୟନରେ ଠିଆ ହୋଇଛି ବୋଉ। ମୋତେ ଦେଖି ତା'ର କୋହ ଉଛୁଳି ପଡ଼ିଲା। "ଏତେବେଳଯାଏ କୋଉଠି ଅଫିସ୍ ହୁଏ ? ଟିକେ ଖବର ପଠାଇପାରିଲୁନି ! ଗୁଣ୍ଡି ରାଣ୍ଡି ଯାହା ଟିକିଏ ସଞ୍ଚିଥାଏ, ତୋ' ପାଇଁ ମାନସିକରେ ଯାଏ।"

## (୭) ଆଶା କିବା ମରୁ ମରିଚୀକା :

ଅପା (ଜନ୍ମଦାତ୍ରୀ) କହେ- ଭାଇମାନେ ବାଣ୍ଟ କରୁଛନ୍ତି, ଇଏ କହୁଛି ମୋର, ସିଏ କହୁଛି ମୋର। ବସୁଧା ହସୁଛି। ପୁଅପୁତୁରାଙ୍କୁ ଏକା ମନେକରି, ଅଭାବ ଭିତରୁ ଭାବର ପ୍ରାବଲ୍ୟକୁ ନିୟତି ନେଇଗଲା ପରେ ବି, ସେମିତି ସରଳ ନିରାଡମ୍ବର ଜୀବନ, ବଦଳିଲା ନାହିଁ। ମୋଟା ଖାଇ, ରୋଟା ପିନ୍ଧି, ମହାତ୍ମାଗାନ୍ଧୀଙ୍କ ଆଦର୍ଶ ମଣିଷ ପରି

ପ୍ରକୃତି ଠାରୁ ନିଜର ଚଳିବା ପାଇଁ ସବୁଠାରୁ ନ୍ୟୂନତମ ଦାନ ମାଗି, ୮୯ ବର୍ଷ କଟାଇ ସେ ଚାଲିଗଲା। ସତରେ ବସୁଧା ହସୁଛି। ଜଗନ୍ନାଥ ପଟ୍ଟନାୟକ ଷାଠିଏ ବର୍ଷତଳେ ଗାଁ ପଟିଆ ରଘୁନାଥପୁରରେ କେତେ ଜମି କରିଥିଲେ। ଗାଁର ସବୁ ପୁରୁଣା ଘର ଭାଙ୍ଗି, ଗୋବିନ୍ଦ ବୁଡିଯାଉଥିବା କୂଅ ପୋତି, କେତେ ବଡ ଘର କରିଥିଲେ। କଟକ ପିଠାପୁରରେ ବିରାଟ ଘର। ଗାଁ ଜମି ମୂଲ୍ୟ ଆଜି ଆକାଶ ଛୁଉଁଛି। କେତେ ଆଗରୁ ଚାଲିଗଲେ ସିଏ। ସବୁ ପଡି ରହିଛି। ବସୁଧା ହସୁଛି।

ତାରାମଣିର ସବୁବେଳେ ପୁଅ ନାତି ନାତୁଣୀଙ୍କ ଗପ, ନହେଲେ କଦବା ବୋଧପୁର ବାପଘର ଗପ। ଜଗନ୍ନାଥ ଭାଇ ସାରୁ ଅପା ଅନ୍ୟ ପ୍ରକାରର ମଣିଷ। ସେମାନେ କର୍ତ୍ତବ୍ୟ କରିଛନ୍ତି ସତ, ହେଲେ ଆଶା କିଛି ରଖିନାହାନ୍ତି। ତାରାମଣି କିନ୍ତୁ ବୁଝେ ନାହିଁ ବସୁଧା ହସୁଛି। ତା'ର ସବୁବେଳେ ଆଶା ଆଉ ସ୍ୱପ୍ନ ପୁଅ ନାତିନାତୁଣୀଙ୍କ ପାଇଁ। ଅପାତ୍ରରେ କିଛି ନ ଦେଇ ଶକ୍ତି ମତେ ସାଇତି ଥାଏ ତାଙ୍କରି ପାଇଁ।

ଏଣିକି ନାତି ନାତୁଣୀଙ୍କ ପାଇଁ ଆଶା। ନାତି ଜିଦି ଧରିଲା ଆମେରିକା ଯିବ। ବାବୁଲଃ ତ ପଇସା ସଞ୍ଚିନାହିଁ। କୋଏଲ୍ ନଗର ରାଉରକେଲାରେ ଘର କିଣିଥିଲେ ରାଜକିଶୋର। ତାକୁ ବିକ୍ରୀ କରିଦେଲେ ବାପପୁଅ। ନାତିକୁ ସେମାନେ ଡାକୁଥିଲେ "ଆଲୋକ"। ଏଣିକି ଆଲୋକର ଯେତେଟଙ୍କା ପ୍ରୟୋଜନ, ସେଥିରୁ ହୋଇଯିବ। ମା'ତ ଚାକିରୀଆ। ମିଶନାରୀ ସ୍କୁଲ ଶିକ୍ଷୟିତ୍ରୀର ନିଷ୍ଠୁର କର୍ମନିର୍ଘଣ୍ଟରେ ବନ୍ଦୀ। ସ୍କୁଲ ଯାଇଥାଏ। ଭିସା, ବ୍ୟାଙ୍କ ଓ ଅନ୍ୟାନ୍ୟ କାମରେ ବୁଲି ବୁଲି କଳା ପଡି ନାତି ଫେରିବ ଦିନ ଦୁଇଟା ଅଢ଼େଇଟାରେ। ତାରାମଣି ସବୁ ଖାଇବା ଗରମ କରି ନାତିକୁ ବାଢ଼ିବ।

ନାତି ଆମେରିକା ପଢ଼ିବା ପାଇଁ ଚାଲିଗଲା। ନାତୁଣୀ ବମ୍ବେରେ ପାଠ ସାରି ଚାକିରୀ କଲାଣି। ବାହା ହେବା ନାଁ ଧରୁ ନାହିଁ। ରାଉରକେଲା ଆସିଛି। ୨୦୦୨ ମସିହାରେ ପୁଣି କଣ ଡକ୍‌ଟରେଟ୍ ପାଠ ପଢ଼ିବା ପାଇଁ ଆମେରିକା ଯିବାକୁ ବୃତ୍ତି ମିଳିଲାନାହିଁ। ଏବେ ଲକ୍ଷ୍ନୌରେ କିଛି ପଢ଼ାପଢ଼ି କାମ କରିବ। ନାତୁଣୀକୁ କହିଲା "ଦେଖ, ୮୨, ୮୩ ବର୍ଷ ହେଲାଣି ମୋତେ, ବଙ୍କା ହେଲାଣି ଅଣ୍ଟା। ତୁ ବାହା ନହେଲେ ମୁଁ ମରିବି ନାହିଁ, କହୁଛି। ତୁ କଣ ଚାହୁଁଛୁ ଡକ୍ଟର ହୋଇ ୫ବର୍ଷ ପରେ ବାହା ହେବୁ ଆଉ ମତେ ଖଟିଆରେ ଶୁଆଇ ତୋ ବେଦୀ ପାଖରେ ରଖିବେ।" ସତକୁ ସତ ତାରାମଣି ଓ ବୋହୂ କଥା ମାନି ବାହା ହେବାକୁ ରାଜି ହେଲା ପ୍ରଜ୍ଞା। ମହତ ପିଲା, ମର୍ଯ୍ୟାଦାବନ୍ତ ଘରେ ବାହାଘର ବି ମିଳିଗଲା ଭଗବାନଙ୍କ ଆଶୀର୍ବାଦରୁ।

ଅଣ୍ଟା ପୂରା ବଙ୍କା ହୋଇଗଲା ଧୀରେ ଧୀରେ। ଯିଏ ଯାହା ପାଇଲା ନ ପାଇଲା ଆଉ ଅପେକ୍ଷା ନ କରି ଫେରିଗଲେ। ତଥାପି କତରା ଲଗା ହୋଇ ସୁଦ୍ଧା ସେ ବଞ୍ଚିଛି। ଆଉ କିଛି ଆଶାପୂରଣର ଅପେକ୍ଷା ରଖିଛି ହୁଏତ !

## (୮) ବିଧିର ବିଧାନ, କୃତଜ୍ଞତାର କଥା :

ଏ ପରିଚ୍ଛେଦରେ ଉମା ଭାଉଜଙ୍କର ବିଶେଷ ଭୂମିକା। ଉମା ଭାଉଜଙ୍କ କଥା ମନେପଡ଼ିଲେ କୃତଜ୍ଞତାରେ ମନ ଓଦା ହୋଇଯାଏ। ଚିତ୍ରଲେଖା ଅପା ଜ୍ୟେଷ୍ଠା। ସବୁ ସାନ ଭାଇଭଉଣୀ-ବୀର, ସାର, ରାଜୁ, ନନ୍ଦ, ପାର୍ବତୀଙ୍କୁ ଓ ସେମାନଙ୍କର ସବୁ ପିଲାମାନଙ୍କୁ ବିଶେଷ ସ୍ନେହ ତାଙ୍କର। ସାରର ପୁଅକୁ ବୀର ପୁଅ କରିନେଲା। ରାଜୁ ମଣିଷ କଲା। ତିନିଭାଇଙ୍କର ସେ ହେଲା ଗୋଟିଏ ପୁଅ। ବାବୁଲା ପାଇଁ ବଡ଼ ଅପାର ବିଶେଷ ସ୍ନେହ। ତାଙ୍କର ପୁଅ ଗୋଟିଏ, ଝିଅ ଗୋଟିଏ। ରଜନୀ ଭାଇ ମୋତେ ନିଜ ଭାଇ ପରି ସ୍ନେହ କରନ୍ତି, ମୋର ସବୁ କଥା ବୁଝନ୍ତି ଆଉ ତାଙ୍କ ଧର୍ମପତ୍ନୀ ଉମାଭାଉଜ, ସେ ତ ଅତୁଳନୀୟା। ପଞ୍ଚମ ଦଶକର ସ୍ୱନାମଧନ୍ୟ ଦକ୍ଷ ସଚ୍ଚୋଟ ପ୍ରଶାସକ, ଆଇ.ଏ.ଏସ. କମିଶନର ବ୍ରଜସୁନ୍ଦର ମହାନ୍ତିଙ୍କର ମଧ୍ୟମା କନ୍ୟା। ଦାଦା ମୁରଲୀଧର ମହାନ୍ତି ବାରିଷ୍ଟର। ପିଉସା ଦାମୋଦର ମହାନ୍ତି ଆଡ଼ଭୋକେଟ୍ ଜେନେରାଲ, ଗର୍ଭର୍ଣ୍ଣର ନିତ୍ୟାନନ୍ଦ କାନୁନ୍‌ଗୋଙ୍କ ବଂଶରେ ମାମୁ ଘର। ଏତେ ବଡ଼ ଘରୁ ଆମ ସାଧାରଣ ଘରକୁ ଭାଇଙ୍କ ବିଦ୍ୟା ଓ ଚରିତ୍ର ଯୋଗୁ ସେ ଆସିଛନ୍ତି। ଦିନେ କେବେ ତାଙ୍କ ପାଖେ ବାପଘର କଥା କେହି ଶୁଣି ନାହିଁ ! ଆମ ସାଧାରଣ ଘର ସହ ମିଶି ସିଏ ସାଧାରଣୀ ହୋଇଯାଇଥିଲେ। ତାଙ୍କ ମନରେ ଥିଲା ପୁଣି ମୋ ପ୍ରତି ଅଶେଷ ମମତା। ସତ କହିବାକୁ ଗଲେ ସେ ବୋହୂ ହୋଇ ଆସିଲାବେଳେ ମୁଁ ୯ ବର୍ଷର ପିଲା। ଦୀର୍ଘଦିନ ସମ୍ପର୍କରେ ସେ ହୋଇଉଠିଥିଲେ ମୋର ବନ୍ଧୁ, ପରାମର୍ଶ ଓ ପ୍ରେରଣାଦାତ୍ରୀ ଭାଉଜ ଓ ମା। ମନେଅଛି, ସ୍କୁଲରେ ପ୍ରଥମ ପଢ଼ିଥିବା ଇଂରାଜୀ ବହି ନୋବେଲ ପୁରସ୍କାର ପ୍ରାପ୍ତ 'ଗୁଡ୍‌ଆର୍ଥ' ସେହିଁ ମୋତେ ଉପହାର ଦେଇଥିଲେ। ଭାଇଙ୍କ ପରି ସତ୍ ଚରିତ୍ର ମୁଁ ଦେଖିନାହିଁ। ଏତେ ବିଦ୍ୟା ପଢ଼ି ସେ ଅଳ୍ପ କଥାର ମଣିଷ, ମୁଁ ଡ଼ବଡ଼ବା, ତାଙ୍କୁହିଁ ରୋଲମଡ଼େଲ ମନେ କରି ତାଙ୍କଠାରୁ ଡେର ପଛରେ ରହି ଜୀବନ ଗଢ଼ିଛି। ସେ ପୁଣି ଯୋଗାଯୋଗ। ତାଙ୍କ ତିନିଝିଅଙ୍କ ନା ବିକୁ, ଟିକୁ ଓ ପିକୁ ସଂଗେ ଯତିପାତ କରି ମୋ ପତ୍ନୀ ଦେଇଛନ୍ତି ମୋ ପୁଅର ନାଁ ରିକୁ। ରିକୁ ମଧ୍ୟ ଭାଇ, ଭାଉଜଙ୍କୁ ବାପି, ବୋଉ ବୋଲି ସମ୍ବୋଧନ କରେ। ଭାଉଜଙ୍କୁ ଓ ବଡ଼ ତିନିଭଉଣୀଙ୍କୁ ରିକୁର ସବୁ କଥା

ସୁନ୍ଦର। ରିକୁର୍ କୌଣସି ଦୁର୍ବଳତାକୁ ସେମାନେ ଅନ୍ୟ ଅର୍ଥ କରି ଭଲଗୁଣ ବୋଲି ପ୍ରତିପାଦିତ କରିଦିଅନ୍ତି। ମୋ ବାହାଘର ବେଳକୁ କେତେ ବର୍ଷ ପାଇଁ ଭାଇଙ୍କ ପୋଷ୍ଟିଂ ହୋଇଥିଲା ରାଞ୍ଚି। ସେତେବେଳେ ଯାତାୟତ ଅସୁବିଧା, ଆସିବେ କି ନା ଦ୍ୱନ୍ଦ୍ୱରେ ଥିଲେ। ଶେଷରେ ସମସ୍ତେ ଆସିଲେ। ଭାଇ ଗାଁକୁ ନ ଯାଇ କଟକରେ ରହିଲେ। (ବାହାଘର କଟକରେ ହେଲା।) ବାପ ଘରେ ଅଷ୍ଟିନ୍ ଗାଡ଼ିରେ ଚଢ଼ି, ଜୀବନରେ କେବେ ଗାଁ ଦେଖିନଥିବା ମଣିଷ, ବାବୁଲା ଭାଉଜ ଆସିନାହାନ୍ତି ବୋଲି ମୁହଁ ଶୁଖାଇ ବସିଥିବ ଭାବି; ନଈ, ନାଳ ପାରି ହୋଇ, ଗାଁ ହିଡ଼ରେ ଚାଲି ଚାଲି ନୂଆଗାଁ ଆସିଥିଲେ ସିଏ। ଆଉ ଗଲାବେଳକୁ ତାଙ୍କର ଅମାୟିକ ବ୍ୟବହାର ଦେଇ ସାଙ୍ଗରେ ଖଞ୍ଜା ବାଲାଙ୍କ ମନ ନେଇଗଲେ।

କୃତଜ୍ଞତାର ଆଖ୍ୟାନ ଲେଖୁଛି ଯେତେବେଳେ, ଛନ୍ଦ ଭଙ୍ଗ ହେଲେ ମଧ୍ୟ ଦୁଇଜଣଙ୍କ କଥା ଲିପିବଦ୍ଧ କରିବି ମୁଁ (ନ ହେଲେ କୃତଜ୍ଞତା ଶିଖେଇଥିବା ଜନ୍ମଦାତାଙ୍କ ପାଖେ ଦ୍ରୋହୀ ହେବି)।

ଜଣେ ମୋର ଉପର ଭାଇ ସରୋଜ କୁମାର, ଡାକ ନାମ ବାବାଜୀ, ଚରିତ୍ର ସଂପୂର୍ଣ୍ଣ ସଚ୍ଚୋଟ, ପରୋପକାରୀ, ନିର୍ଲୋଭ, ଆତ୍ମତ୍ୟାଗୀ ସନ୍ନ୍ୟାସୀର। ମୋ ଝିଅ ଦୁଇ ବର୍ଷ ପିଠାପୁରରେ ଜେଜେମା ବଡବାପାଙ୍କ ଘରେ ରହି ରେଭେନ୍ସା କଲେଜରେ ପାଠ ପଢୁଥିଲା। ପରବର୍ତ୍ତୀ କାଳରେ ତା'ର ୱେବ୍ସାଇଟରେ ଯେଉଁ ତିନିଜଣ ମଣିଷ ତାକୁ ପ୍ରଭାବିତ କରିଛନ୍ତି ବୋଲି ଲେଖିଛି ସେ, ବାପାମାଙ୍କ ପରେ ତୃତୀୟ ନାମ ସରୋଜ ପଟ୍ଟନାୟକଙ୍କର। ଏକା ନାହି ଦୁଇଖଣ୍ଡ, ଏକା ମାଆ ପେଟର ତଳଉପର ଦୁଇଭାଇ ଆମେ, ତା'ପାଖେ କାହିଁକି ଋଣୀ ମୁଁ ! କେଉଁଠୁ ଆରମ୍ଭ କରିବି, କେଉଁଠି ସାରିବି ?

ଆଉ ଜଣେ ମୋ ମାଟେରିଆଲସ୍ ଡିପାର୍ଟମେଣ୍ଟର ମୁଖ୍ୟ ୧୯୮୧ ରୁ ୧୯୮୭ ଯାଏ, ପି.ସି. ସିହ୍ନା (ପ୍ୟାରେଚନ୍ଦ୍ର)ଙ୍କ ନାଁ ଶୁଣିଲେ ଗର୍ଭିଣୀ ଗାଈ ବାଟ ଛାଡ଼ିଦେବ। ସେ ବିହାର ପ୍ରଦେଶ ଆରାର ଲୋକ। ଲୋକେ ଉପର ଅଫିସରଙ୍କୁ ସନ୍ତୁଷ୍ଟ କରିବାକୁ ଖୁଆନ୍ତି, ପିଆନ୍ତି, କେତେକଣ କରନ୍ତି। ସିହ୍ନା ସାହେବ ମତେ ଖୁଆଇଛନ୍ତି, ପିଆଇଛନ୍ତି, ମୋ ପାଇଁ, ମୋ ପତ୍ନୀ ଆରତି ପାଇଁ ଆମେରିକାରୁ ଉପହାର ନେଇଆସିଛନ୍ତି। ମୋତେ ଓ ମୋ କାମକୁ ସେ କାହିଁକି ଏମିତି ଭଲ ପାଉଥିଲେ କେଜାଣି। ମୋତେ ଉପର ଅଫିସରମାନଙ୍କୁ ଟପେଇ ପ୍ରମୋଶନ ଦେଇଛନ୍ତି। କେତେ କନ୍ଫରେନ୍ସ ଟ୍ରେନିଂକୁ ପଠାଇଛନ୍ତି। ପ୍ଲାଣ୍ଟର ଶ୍ରେଷ୍ଠ ଅଫିସର 'ଜବାହର ପୁରସ୍କାର' ପାଇଁ ଚାରିଥର ମୋ ନାଁ ପଠାଇ ଶେଷରେ ୧୯୮୫ରେ ମୋତେ ପୁରସ୍କାର ମିଳିବା ପରେ ଯାଇ ଆଶ୍ୱସ୍ତ ହୋଇଛନ୍ତି।

ମୂଳଆଖ୍ୟାନକୁ ଫେରିବା ପୂର୍ବରୁ ଆଉ ଗୋଟିଏ କଥା ଏହି ଆତ୍ମ ଚରିତ ମୂଳକ ଲେଖାରେ କହିବା ଯଥାର୍ଥ ହେବ। ବୀରକିଶୋର, ରାଜକିଶୋରଙ୍କ ସଙ୍ଗେ ମଧ୍ୟ ପୂର୍ବଜନ୍ମରେ କିଛି ସଂପର୍କ ଥିଲା ବାବୁଲାର। ନ ହେଲେ ପୋଷ୍ୟ ପୁଅକୁ କେହି ଏପରି ବିଶ୍ୱାସ କରେ ନାହିଁ। ବୀରକିଶୋର ଦୁନିଆ ଦେଖିନାହାନ୍ତି। ମଠ, ଚୁଡ଼ଙ୍ଗ ସାହି, ପୁରୀ, ଗାଁ, କଟକ, ବେଶୀ ହେଲେ ପ୍ରୟାଗ ବା ବୃନ୍ଦାବନ। ସେ ପୁଣି ପଚାଶ ବର୍ଷ ପୂର୍ବେ। ସେ ଭାବନ୍ତି, ଯେତିକି ଘର ବାଡ଼ି କରିଛନ୍ତି ଗାଁରେ ଓ ପୁରୀରେ, ଗୋଟିଏ ପୁଅ ପାଇଁ ଯଥେଷ୍ଟ। ପୁଅର ବିବାହ ନାତିର ଏକୋଇଶିଆ, ପ୍ରଥମ ଜନ୍ମଦିନରେ ମନଖୋଲା ଖର୍ଚ୍ଚ କରି ବାକି ଯାହା ଥିଲା, ସେ ଆଜିର କଳାଧନ ଯୁଗରେ କମ୍ ହେଲେ ମଧ୍ୟ, ହାତରେ ଅଳ୍ପ କିଛି ଚଳିବାକୁ ରଖି, ପତ୍ନୀ ଇନ୍ଦୁବାଳାଙ୍କର ୧୯୭୮ରେ ଦେହାନ୍ତ ପରେ, ଟଙ୍କା, ସୁନା, ଜମି, ଘର ସବୁ ପୁଅ ବୋହୂଙ୍କୁ ଦେଇ ଦେଇଥିଲେ। ରାଜକିଶୋର ମଧ୍ୟ ୧୯୮୬ର ଅବସର ପୂର୍ବରୁ ଓ ପରେ ତାଙ୍କ ଟଙ୍କା ଓ ରାଉରକେଲାର ଘର, ପୁଅକୁ ଦେଇଥିଲେ। ତାରାମଣି ବୁଦ୍ଧିମତୀ, ସେ ଜାଣେ ପୁଅ ହେଳାଦସ୍ତିଆ, ପଇସା ଲୋଭ ନାହିଁ, ପୁଣି ସଙ୍କୋଚ। ଦେଢ଼ଶୁର ଯାହା ରଖିଛନ୍ତି ଆଜିକାଲି ଯୁଗକୁ କିଛି ନୁହେଁ। ଭୁବନେଶ୍ୱରରେ ଜମି ଖଣ୍ଡେ ପାଇଁ ସେ ସଞ୍ଚିତ ଟଙ୍କା ଦେଇଥିଲା ବୋହୂ ନାଁରେ କିଣା ହେବା ପାଇଁ। ସୁନା ନାତୁଣୀର ବାହାଘର ପାଇଁ ଦେଇଦେଲା। ଆଉ ସବୁବେଳେ ପରିବାରର ସମସ୍ତଙ୍କ ସଂଗେ ଲଗାଉଥିଲା ବାବୁଲା ପାଇଁ ସାଇତିବା ପାଇଁ।

ହେଲେ ପ୍ରାୟ ୨୦ ବର୍ଷ ପୂର୍ବେ ରୂପା ଅଳଙ୍କାର ବିକି ଗାଁରେ ଦେଢ଼ି ମହାଜନି କରି ଯାହା ସଞ୍ଚି ଥିଲା, ଭଣଜା ବୋହୂ ଉମାକୁ ଦେଇ କହିଥିଲା "ଉମା ! ବାବୁଲା ହାତରେ ପଇସା ରହେ ନାହିଁ, ଫକଡ଼। ମୋ ଶୁଦ୍ଧି ଖର୍ଚ୍ଚ ପାଇଁ ତାକୁ ବାଧା ହେବ। ଏ ଟଙ୍କା ମୋର ତୁ ରଜନୀଙ୍କୁ କହି ବ୍ୟାଙ୍କ୍‌ରେ ରଖି ବଢ଼ାଉ ଥିବୁ। ମୁଁ ମଲାବେଳ ହେଲେ ବାବୁଲାକୁ ଦେବୁ। ଆଗରୁ କହିବୁ ନାହିଁ। କଥା ତୋ ଓ ମୋ ଭିତରେ ରହିଲା।" ବିଧିର ବିଧାନ। ଝିଅ ବୟସର, ଅଠର ବର୍ଷ ସାନ ବୋହୂକୁ, ଆରପାରିକୁ ଯିବା ପାଇଁ ଆଗ ଡାକରା ଆସିଗଲା। ତାଙ୍କର ଦେହାନ୍ତ ହେଲା କ୍ୟାନ୍‌ସର୍‌ରେ ୨୦୦୬ ମସିହା ଜୁଲାଇ ୧୨ ତାରିଖରେ। ଚାକିରୀରୁ ଅବସର ନେଇ ଆମେ ଭୁବନେଶ୍ୱର ଆସିଛୁ ସେହି ବର୍ଷ ଏପ୍ରିଲ ମାସରେ। ଭାଇ ମଧ୍ୟ ୧୯୯୧ ରେ ଅବସର ପରେ ଭୁବନେଶ୍ୱରରେ ରହୁଛନ୍ତି। ଆମେ ଭୁବନେଶ୍ୱର ଆସିବା ପରେ ଦେହତ୍ୟାଗର ପ୍ରାୟ ମାସେ ପୂର୍ବରୁ, ପ୍ରାୟ ଅଶୀହଜାର ଟଙ୍କାର ଚେକ୍‌ଦେଇ, ସବୁକଥା କହି, ମାଇଁଶାଶୁଙ୍କୁ ଦେଇଥିବା ଚୁକ୍ତି ପୂରଣ କରିଗଲେ ଭାଉଜ।

## ଶେଷ ଦୃଶ୍ୟ :

ମିଞ୍ଜି ମିଞ୍ଜି ହୋଇ ଜଳୁଛି ଦୀପ। କୋଉ ମୁହୂର୍ତ୍ତରେ ଦପ୍‌କିନି ଜଳି ଉଠି ଲିଭିଯିବ। ଖୁଡ଼ୀ ଦଶବର୍ଷ ସାନ। ଗାଁରେ ୧୭/୧୮ ଏକର ଜମି, ୧୯୮୦ରେ ଦାଦାଙ୍କ ଦେହାନ୍ତ ପରଠାରୁ ସମ୍ଭାଳି ଆସିଥିଲା। ଲୋକବାକ ତା ହାତରେ। ତା ଭରସାରେ ବାପା ବୋଉ ଗାଁକୁ ଆସିଥିଲେ। ଖଞ୍ଜାର ଭାଇ ପୁତୁରା, ନାତି ବୋହୂ ଓ ଛୋଟପିଲା ମାନଙ୍କ ପାଖରେ ରହି ଦୁଃଖ ସୁଖ ଗପସପ ହୋଇ ଶେଷଦିନ ସବୁ କଟାଇ ଦେବେ। ବାପାଙ୍କର ଦେହାନ୍ତ ହେଲା ୯୩ ବର୍ଷ ବୟସରେ ଫେବୃୟାରୀ ୨୦୦୭ରେ। ହେଲେ ସେପ୍‌ଟେମ୍ବର ମାସରୁ ଖୁଡ଼ୀର ପୁରୁଣା ଶ୍ୱାସ ବେମାରୀ ବାହାରି ଆଉ ପୂରା ଭଲ ହେଲା ନାହିଁ। ହଠାତ୍ ନଭେମ୍ବର ୨୮ରେ ଦେହତ୍ୟାଗ କଲା ଖୁଡ଼ୀ। ତାପରେ ତଥାପି ଚଳପ୍ରଚଳ ହେଉଥିଲା ବୋଉ। ୨୦୦୮ ଫେବୃୟାରୀ ୧୧ରେ, ପୁତୁରା (ମାମୁଙ୍କ ପୁଅ) ପଞ୍ଚୁର ଝିଅ ଶେଲୀର ବାହା ଘରକୁ ବିଦ୍ୟାଧରପୁର କଲ୍ୟାଣମଣ୍ଡପକୁ ନେଇଥିଲୁ, ସବୁ ବାପଘରର ସଂପର୍କୀୟଙ୍କୁ ଦେଖି ଖୁସି ହେବ ବୋଲି। ଭଲ ଥିଲାବେଳେ ପଞ୍ଚୁଠାରୁ ବେଶୀ ଚିନ୍ତା କରୁଥିଲା ସିଏ ଶେଲୀ ବାହାଘର ପାଇଁ। ଏବେ ୨,୩ ମାସ ହେଲା ଅସ୍ଥିକଙ୍କାଳସାର ହେଲାଣି। ଚଳପ୍ରଚଳ ନାହିଁ/ ତାକୁ ଦେଖି କିଏ କହିବ, ବସନ୍ତ ରୋଗ ପୂର୍ବରୁ ଓ ପରେ ମଧ୍ୟ ସେ ଥିଲା ଅପୂର୍ବ ଶୋଭାମୟୀ। ଅଳ୍ପଦିନ ତଳେ ଅଭିନେତ୍ରୀ ମଣିମାଳା ଦେବୀଙ୍କର ଫଟୋ ବାହାରିଥିଲା ଖବର କାଗଜରେ। ରେଭେନ୍‌ସା କଲେଜରେ ୧୯୬୧ରୁ ୧୯୬୪ ରେ ପାଠ ପଢ଼ିଲା ବେଳେ ଦେଖିଥିଲି ତାଙ୍କୁ। ଅନ୍ନପୂର୍ଣ୍ଣ 'ବି' ମଞ୍ଚରେ ତାଙ୍କ ଅଭିନୟ, ରୂପ ଶୋଭା, ସମସ୍ତଙ୍କୁ ମୁଗ୍ଧ କରୁଥିଲା। ଏବେ ସଂପୂର୍ଣ୍ଣ କଳା ମୁହଁରେ ଛଉ ମାଡ଼ି ଯାଇ ପକ୍ଷାଘାତ ରୋଗରେ ବିକଳ ଅବସ୍ଥାରେ ଅଛନ୍ତି ସିଏ। ମଞ୍ଚରେ ପ୍ରଖ୍ୟାତ ଅଭିନେତ୍ରୀଙ୍କୁ ଦେଖିଥିବା ମଣିଷଟିଏ ତାଙ୍କୁ ଏବେ ଦେଖିଲେ ଭୟରେ ଚମକିପଡ଼ିବ। ବୋଉକୁ ଦେଖି ମଣିମାଳା ଦେବୀଙ୍କ ଚିତ୍ର ମନକୁ ଆସୁଛି। ମନ ଶତଖଣ୍ଡ ହୋଇଯାଉଛି। ଆଃ, ଜୀବନ ଏଇଆ।

ଜଗି ବସିଛି ବାପି (ଅଜୟ)। ଜେଜେଙ୍କ ତଳଭାଇ ଭିକାରୀ ଚରଣଙ୍କ କନିଷ୍ଠ ପୁତ୍ର ସୁଦର୍ଶନଙ୍କର ଏକମାତ୍ର ପୁତ୍ର। ଜେଜେ (ବନମାଳୀ) ଭିକାରୀ ଓ ପଦ୍ମଚରଣ,

ପିତା (କୃଷ୍ଣଚନ୍ଦ୍ର)ଙ୍କର ଦ୍ୱିତୀୟ ପତ୍ନୀଙ୍କ ପୁଅ। ହେଲେ ଭିକାରୀ ପିତାଙ୍କ ପ୍ରଥମା ପତ୍ନୀଙ୍କ ପୁଅ ନିଃସନ୍ତାନ ବଡବାପା ପୁଅ ବଡ଼ଭାଇ ଅଚ୍ୟୁତଙ୍କ ପାଖକୁ ପୁଅ ହୋଇ ଯାଇଥିବା ଯୋଗୁ, ବାପି ସଂପର୍କରେ ବୋଉର ନାତି। ପରୋପକାର, ସ୍ନେହୀ, ପରଦୁଃଖରେ ଦୁଃଖୀ। ପଦେ ହେଲେ ମିଛ କହେ ନାହିଁ ବୋଲି ତା ସଙ୍ଗେ ବୋଉର ମୂଳରୁ ଖୁବ୍ ଭଲ ପଡ଼େ। ଖୁଡ଼ୀକୁ ଶ୍ୱାସ ବାହାରିଲା ଦିନୁ ସେପ୍‌ଟେମ୍ବର ମାସଠାରୁ ବାପି ଓ ତାର ପରିବାର ଜେଜେମା ତାରାମଣି ଓ ରତ୍ନମଣିଙ୍କ ସବୁ ଖବର ବୁଝୁଛନ୍ତି। ବାପିର ଯତ୍ନରେ ସନ୍ତୁଷ୍ଟ ହୋଇ ବୋଉ ମୋତେ କଲିକତାରେ ଚାକିରୀ କରିବାକୁ ଅନୁମତି ଦେଇଛି। ଏବେ ପ୍ରାୟ ମାସେ ହେବ, କଥାବାର୍ତ୍ତା ପ୍ରାୟ ବନ୍ଦ କରି ଦେଇଛି କହିଲେ ଚଳେ। ଯାହା କହୁଛି ସବୁ ଅସଂଲଗ୍ନ। ବାପି ଛଡ଼ା ଓ ବେଳେ ବେଳେ ମୋ ଛଡ଼ା ଆଉ କାହାରିକୁ ଚିହ୍ନି ପାରୁନାହିଁ।

ଗୋଟିଏ ବଙ୍ଗଳୀ ଚଳଚ୍ଚିତ୍ର (ନିଶିପଦ୍ମ)ର ଗୀତ- "ସକଳ ସୁନା ତୁଚ୍ଛ କଲି କଳା ସୁନାର ପାଇଁ"-ଯଶୋଦା ମା'ଙ୍କ ଗୀତ ମନେ ପଡୁଛି। ବାପା ଲୋକଙ୍କ ଦୁଃଖ ଅସୁବିଧା ସହିପାରନ୍ତି ନାହିଁ। ଏଣୁ ବୋଉକୁ ନ ଜଣାଇ ପଚାଶ ହଜାରରୁ ଊର୍ଦ୍ଧ୍ୱ ଟଙ୍କା ଧାର ସୂତ୍ରରେ ବା ଏମିତି, ବାପା ଦେଇଥିଲେ ଗାଁର କେତେ ଲୋକଙ୍କୁ। ବୋଉ ପରେ କିଛି କିଛି ଜାଣିପାରିଥିଲା ଓ ସମସ୍ତଙ୍କୁ ଟଙ୍କା ଫେରାଇବା ପାଇଁ କଡ଼ା କଥା କହୁଥିଲା। ବାପାଙ୍କ ଦେହାନ୍ତ ପରେ ତାଙ୍କ ଖାତା ଫିଟାଇ ଟଙ୍କା ନେଇଥିବା ଲୋକଙ୍କ ସଙ୍ଗେ କଳି ଲଗାଇଲା। ମୁଁ ସବୁବେଳେ କହେ- "ବୋଉ ତୁ ଯେତେ ବାଡ଼େଇ କଚାଡ଼ି ହେଲେ, ମୁଁ କୋଟିପତି ହୋଇ ପାରିବି ନାହିଁ ବିଧାତା ଯଦି ମୋ କପାଳରେ ନ ଲେଖିଛି। ତୁ ଏପରି ସମସ୍ତଙ୍କୁ କହି, ସାମାନ୍ୟ କେଇଟା ଟଙ୍କା ପାଇଁ ଗାଁଯାକଙ୍କୁ ବଇରି କରି, ପାପ ଅର୍ଜନ କରନାହିଁ।" ହେଲେ ୫, ୬ ମାସ ହେବ ତା'ର ଆଉ ସେ କଥା ନାହିଁ। ଜଣେ ଖଞ୍ଜାର ଦାଦାଙ୍କୁ ଟଙ୍କା ନ ଫେରାଇବାରୁ ଆଗରୁ ରାଗୁଥିଲା। ଦିନେ ମୋତେ କହିଲା "ଦାଦାଙ୍କର ପୁଅମାନଙ୍କର ଘର ପାଇଁ ଡ଼ିଅ ନାହିଁ। ତାଙ୍କୁ ଘର ପାଇଁ ଡ଼ିଅ ଦେବୁ।"

ପିଲାଦିନେ, ଜନ୍ମଦିନରେ, କେତେ ପ୍ରକାର ରୋଷେଇ କରି ସାଇପଡ଼ିଶାଙ୍କୁ ଖୁଆଇବ। ବୁଢ଼ା ହେଲା ଯାଏ ଜନ୍ମ ଦିନରେ ନୂଆ ପ୍ୟାଣ୍ଟ, ସାର୍ଟ ଦେବ ଓ ମହାଦେବଙ୍କ ମନ୍ଦିରକୁ ପଠାଇବ ମୋତେ। ବାପା ଯଦି ଅବେଳରେ ଜଳଖିଆ ମାଗିବେ, କହିବ "ଘରେ ମୁଢ଼ି ଅଛି ଖାଅ।" ମୁଁ କିଛି କରିବାକୁ କହିଲେ, ଅବେଳ ହେଲେ ମଧ୍ୟ ଧଡ଼ପଡ଼ ହୋଇ ଉଠିବ। ଥରେ ମୁଁ ମେରୁଦଣ୍ଡ ଟିବି ରୋଗରେ ୧୯୯୨ ମସିହାରେ ଡାକ୍ତରଖାନାରେ ୨ ମାସ ରହିଥିଲି। କାଖତଳୁ ନାଭିତଳ ଯାଏ ପ୍ଲାଷ୍ଟର ହୋଇଥାଏ।

ମୁଁ ଚିତ୍ ହୋଇ ପଡ଼ି ରହିଥାଏ। ଦିନେ, ସେ ମାଛ ମଗାଇ, ମୁଣ୍ଡ ତରକାରୀ କରି ମୋ ପାଇଁ ନେଇ ଡାକ୍ତରଖାନାରେ କାବିନରେ ମୋତେ ଖୁଆଇଲା। ମୁଁ ସବୁବେଳେ ଅନୁଭବ କରିଛି, ସମସ୍ତଙ୍କୁ ପଛ କରିଛି ସେ, କେତେ ମଣିଷଙ୍କୁ ବଇରୀ କରିଛି, ମାଗି ଆଣିଥିବା ପୁଅଟିର ପାଇଁ। ଯଶୋଦାଙ୍କ ପରି ସକଳ ସ୍ନେହ ସେ ତୁଚ୍ଛ କରିଦେଇଛି ତାର ତିନିଭାଗରୁ ଭାଗେ ପୁଅ, କାଳିଆ ବାବୁଲା ପାଇଁ।

ମୋ ଦେହରେ କେବେ ଧୂଳି ଟିକେ ଲାଗିବାକୁ ଦେଇନାହିଁ ବୋଉ। ମୋତେ ଯେପରି ସାମାନ୍ୟ ବି ଦୈହିକ କଷ୍ଟ ନଦିଏ ସେଥିପାଇଁ ସବୁବେଳେ ଜାଗ୍ରତ ରହିଛି। ବାପା ଅନେକ ଥର ଇସ୍ପାତ ହସ୍‌ପିଟାଲର କ୍ୟାବିନ୍‌ରେ ରହିଛନ୍ତି। ବୋଉ କିନ୍ତୁ ଦେହ କଷ୍ଟ ଦେହରେ ମାରି ଦେଇଛି ସିନା, ହେଲେ କେବେ ହସ୍‌ପିଟାଲ କ୍ୟାବିନ୍‌କୁ ଯାଇନାହିଁ। ଏବେ ପୁଣି ସିଏ ନିଜେ ଖୋଜି ନେଇଛି ବାପିକୁ, ଶେଷଦିନରେ ତା'ର ଶୁଶ୍ରୂଷା କରିବାର ଲାଗି, ଆଉ ମୋତେ ପଠାଇ ଦେଇଛି କଲିକତା, ଅବସର ପରେ ସୁଦ୍ଧା ଚାକିରୀ କରିବାକୁ, ଯେହେତୁ ସେ ଜାଣେ ଭଲ ଭାବେ, ମୋର ଆର୍ଥିକ ଅସଂହତିର କଥା। କେବେ ହେଲେ କହିନାହିଁ- "କୁଆଡ଼େ ନ ଯାଇ ମୋ ପାଖରେ ବସିରହ ବାବୁ। ମୁଁ କେମିତି ଇସ୍ପାତ/ହସ୍‌ପିଟାଲରେ ତୋ ଟାଇଫଏଡ୍ ବେଳେ, ହାଡ଼ଟିବିରେ ସାରା ଦେହ ପ୍ଲାଷ୍ଟର ହୋଇଥିବା ବେଳେ ଜଗି କରି ବସିଥିଲି।"

ଆଉ ଶୁଭିବ ନାହିଁ ସେ ଦୁଃଖଭୁଲା ସ୍ୱର। ସବୁ ଶେଷ ହୋଇଗଲା। କେତେ ଝଡ଼ଝଞ୍ଜା ଆସିଛି ମୋ ସାଧାରଣ ଜୀବନରେ, ଚାକିରି ଜୀବନରେ। ଦୋହଲିଯାଇଛି ସତ, ହେଲେ ଭାଙ୍ଗିଯାଇନାହିଁ। ଆଠଣା, ଟଙ୍କାଏ, ପତାକା ବା ଦୁଧ ସ୍ନାନ ହେଉ, ଠାକୁରଙ୍କୁ ମାନସିକ ଯାଚି ଯାଚି, ମୋ ଜୀବନର ଶତ ଝଡ଼ଝଞ୍ଜାକୁ ପ୍ରତିହତ କରିଥିବା ମଣିଷଟି ସତେ ଚାଲିଗଲା ! ଜୀବନର ପଚାଶ ବର୍ଷରୁ ଊର୍ଦ୍ଧ୍ୱ, ଯେଉଁ ମଣିଷ ତା'ର ଶୟନ, ସ୍ୱପନ, ଧ୍ୟାନ, ଜାଗରଣର ସମସ୍ତ ସୀମାକୁ ବ୍ୟାପି ଯାଇଥିଲା, ସେଇ ତାର ପ୍ରାଣପ୍ରିୟ କାହ୍ନୁକୁ ଏକା କରି ଚାଲିଗଲା ଯଶୋଦା।

ସେ କାଳର ସମସାମୟିକ ଲୋକେ କେଜଙ୍କୁ ଦେବତୁଲ୍ୟ କହୁଥିଲେ। ଏ କାଳରେ ବନ୍ଧୁବାନ୍ଧବମାନେ ଶାଶୁଙ୍କୁ ଦେବୀ ପରି ସମ୍ମାନ କରନ୍ତି। ହେଲେ ବୋଉ ମୋର ଥିଲା ମାନବୀ। ମଣିଷର ସାଧାରଣ ଦୋଷଗୁଣ ନେଇ ସେ ଥିଲା ସାଧାରଣ ମଣିଷଟିଏ। କେହି ଜଣେ ଈର୍ଷାରେ ତାକୁ କହିଥିଲା- 'ମାଗି ଆଣିବା ତିଅଣ ହାପୁଡ଼େ।' ସେ ତିଅଣରେ ମନତୋଷ ହୋଇଥିଲା କି ନାଁ ସେ କଥା ସେ ହିଁ ଜାଣିଥିଲା। କିନ୍ତୁ ବଡ଼ ନଣନ୍ଦଙ୍କ ଠାରୁ ଶ୍ୱଶୁର ମାଗି ଆଣିଥିବା ପୁଅଟିକୁ ସେ ମନର

ଗହ୍ୱୀରରୁ ନିର୍ମଳ ଜଳ ପାଇବା ଦେଇଥିଲା । ବର୍ଷକର ଶିଶୁ ବେଳଠାରୁ, ଜୀବନର ଅଙ୍କାବଙ୍କା ବଂଧୁର ବାଟରେ ଚାଲି ଚାଲି ଥକି ଯାଇଥିବା ଷାଠିଏ-ଉତ୍ତୀର୍ଣ୍ଣ ବୟସ-ଯାଏ, ସେଇ ପୁଅ ହିଁ ଯେମିତି ଥିଲା ତା'ର ସମଗ୍ର ସଂସାର ।

ପିଲାମାନଙ୍କର ମାଆମାନଙ୍କ ପ୍ରତି ସମପରିମାଣ ଶ୍ରଦ୍ଧା, ଭକ୍ତି ଥାଉ ବା ନଥାଉ, ସଂସାରର ସବୁ ମାଆମାନେ, ଦିନରାତି, ଅହରହ ନିଜ ପିଲାମାନଙ୍କ କଥା ଭାବୁଥାନ୍ତି, ତାଙ୍କର ଶୁଭମନାସୁ ଥାଆନ୍ତି । ମୁଁ ଭାବୁଛି ଆଜି ଯେମିତି ବୋଉ ମୋର ବିଶ୍ୱର ସାର୍ବଜନୀନ ମାତୃହୃଦୟର ପ୍ରତୀକ ପାଲଟି ଯାଇଛି ।

ମୋର ମନେ ହେଉଛି ସେ ଯେମିତି ଏବେବି ମୋ ପାଖରେ ଅଛି ଓ ସବୁଦିନ ରହିଥିବ । କାଳିଜାଈ କାଳ କାଳ ଚିଲିକା ଯାତ୍ରୀଙ୍କ ନିରାପତ୍ତା ପାଇଁ ତତ୍ପର ଥିବା ପରି, ବୋଉ, ତା'ର ପଣତର ଶୀତଳ ଛାୟାରେ ମୋତେ ଓ ମୋ ପରିବାରକୁ ଘଣ୍ଟ ଘୋଡ଼େଇ ରଖିଥିବ ଓ ଚିରକାଳ ଆମମାନଙ୍କ ଉପରେ, ଏବଂ ତା'ର ସବୁ ଆପଣାରଙ୍କ ଉପରେ ଝରାଉଥିବ ଆଶୀର୍ବାଦର କୁସୁମଧାରା ।

ଶେଷ- ସେପ୍‌ଟେମ୍ବର ୬, ୨୦୦୮

## ଯଶୋଦା (ତାରାମଣି)ର ବଂଶାବଳୀ

| | |
|---|---|
| ପିତା - | ରଘୁନାଥ ଦାସ, ମାତା - ଅନ୍ନପୂର୍ଣ୍ଣା ଦେବୀ |
| ବଡ଼ଭାଇ - | କାଶୀନାଥ, ଏକମାତ୍ର ସନ୍ତାନ- ଶାନ୍ତିଲତା |
| | ବଂଶୀଧର, ପତ୍ନୀ- ପ୍ରିୟ ନୂଆଭାଉଜ କେତକୀପ୍ରିୟା |
| | ଦ୍ୱାରିକାନାଥ, କନ୍ୟା-ସ୍ୱର୍ଣ୍ଣଲତା, ପୁଅ - ଗିରିଜା ଶଙ୍କର |
| ବଡ଼ ଭଉଣୀ- | କ୍ଷେତ୍ରମଣି, ଭିଣୋଇ - ଗୋଲେଖ ଚନ୍ଦ୍ର ମହାନ୍ତି |
| | (ପୁଅ- ଶରତ ଚନ୍ଦ୍ର, କନ୍ୟା- ବିଦ୍ୟୁଲତା, ଆଶାଲତା) |
| ଶ୍ୱଶୁର - | ବନମାଳୀ ମହାନ୍ତି, ଶାଶୂ - ବାଜମଣି |
| ଦେଡଶୁର- | ବୀର କିଶୋର, ଧର୍ମପତ୍ନୀ- ଇନ୍ଦୁବାଳା |
| ବଡ଼ ନଣନ୍ଦ- | ଚିତ୍ରଲେଖା, ପତି- ରଘୁନାଥ ମହାନ୍ତି |
| | (ପୁଅ - ରଜନୀକାନ୍ତ, କନ୍ୟା- ଅନସୂୟା) |
| | ସାରଳା, ପତି- ଜଗନ୍ନାଥ ପଟ୍ଟନାୟକ |
| ଦିଅର - | ନନ୍ଦକିଶୋର, ଧର୍ମପତ୍ନୀ - ରତ୍ନମଣି |
| ସାନ ନଣନ୍ଦ- | ପାର୍ବତୀ, ପତି - ବାଳକୃଷ୍ଣ ଦାସ |
| | (ଏକମାତ୍ର ସନ୍ତାନ - ଜୟଦେବ) |

## ଦେବକୀ (ସାରଳା)ଙ୍କ ବଂଶାବଳୀ

| | |
|---|---|
| ପିତା - | ବନମାଳୀ ମହାନ୍ତି, ମାତା - ବାଜମଣି ଦେବୀ |
| ଶ୍ୱଶୁର - | ସୁଦର୍ଶନ ପଟ୍ଟନାୟକ, ଶାଶୂ - ରମ୍ଭା ଦେବୀ |
| ଦେଢ଼ଶୁର- | ସୋମନାଥ- ପୁତ୍ର- ଜନ୍ମେଜୟ |
| | ବିଶ୍ୱନାଥ- କନ୍ୟା-ସୁନ୍ଦରମଣି, କ୍ଷେତ୍ରମଣି, ପୁଅ-ଜ୍ୟୋତିଷଚନ୍ଦ୍ର |
| | କାଶୀନାଥ-ପୋଷ୍ୟପୁତ୍ର (ଅନୁଜ ଜଗନ୍ନାଥଙ୍କ ପୁଅ) ସରୋଜ କୁମାର |
| ପତି - | ଜଗନ୍ନାଥ ପଟ୍ଟନାୟକ |
| ପୁଅ - | ଉମେଶ ଚନ୍ଦ୍ର |
| ଝିଅ - | ଗୋଲାପ, ପ୍ରମୋଦିନୀ |

# ପରିଶିଷ୍ଟ

ଦଶାହ ରାତି ଅଧରୁ ଅନହୂତି ଘୋଟି ଆସିଲା ମେଘ ବର୍ଷା । ପରେ ପରେ ଆସିଲା, ନାହିଁ ନଥିବା ବନ୍ୟା ମହାନଦୀରେ । ବିପଦ ସଙ୍କେତର ଯଥେଷ୍ଟ ଉପରେ ପାଣି ବହି ମଧ୍ୟ ଦେବୀନଦୀ ରକ୍ଷା ପାଇଗଲା । ଏସବୁ ଘନଘଟା ସତ୍ୱେ ଏକାଦଶାହ, ଦ୍ୱାଦଶାହ କାର୍ଯ୍ୟ ସନ୍ତୋଷଜନକ ଭାବେ ଶେଷ ହେଲା । ଚତୁର୍ଦ୍ଦଶଦିନ ସଂଧ୍ୟାରେ ପାଗ ହଠାତ୍ ଅନୁକୂଳ ହୋଇଆସିଲା । ଦୁଇଦିନ ପୂର୍ବରୁ ଖରାପ ହୋଇଥିବା ଇଲେକ୍ଟ୍ରିକ ପାଓ୍ୱାର ଠିକ୍ ହୋଇ ଗାଁରେ ବିଜୁଳିବତୀ ଜଳିଲା । ଏହି ପରିବେଶରେ ସଂଧ୍ୟାରେ ହେଲା ସଂକୀର୍ତ୍ତନ । ବିହ୍ୱଳିତ କରିଦେଲା ସମସ୍ତଙ୍କୁ ଏକ ପ୍ରାଣମୟ ଆଧ୍ୟାତ୍ମିକ ଭାବରେ । ସାଙ୍ଗ ହେଲା ସବୁ କାର୍ଯ୍ୟକ୍ରମ ।

ଯାହା ଅଳ୍ପ ପଇସା ଥିଲା ସେ କେତେଦିନ ପୂର୍ବରୁ ଦେଇ ଦେଇଥିଲା । ତଥାପି, ତାପରେ ଦିନେ କୌତୁହଳରେ ଖୋଲିଲୁ ତା'ର ଟ୍ରଙ୍କ୍ । କେତେ ଖଣ୍ଡ ନୂଆ ଶାଢ଼ୀ ତା'ର । ତା' ଅନ୍ତେ, ତା' କାର୍ଯ୍ୟରେ ଲାଗିବ ବୋଲି ବୋଧେ ସାଇତି ଦେଇଥିଲା । ମୁଁ ଅବଶ୍ୟ ଲକ୍ଷ୍ୟ କରି ଥିଲି, ବୋଉ ୨, ୩ ବର୍ଷ ହେବ ନୂଆ ଶାଢ଼ୀ ପିନ୍ଧୁ ନଥିଲା । କେତେ ଫଟୋ ପରିବାରର, ପୁଅବୋହୂ, ନାତି ନାତୁଣୀ, ଭଣଜା, ଭାଣିଜୀଙ୍କର । କେତେ ପୁରୁଣା ଫଟୋ ୪୦, ୪୫ ବର୍ଷ ତଳ ମୋ ପାଠ ପଢ଼ା ବେଳର । ଆଉ ଖଣ୍ଡେ ଚଉତା ହୋଇଥିବା ରଂଗୀନ୍ କାଗଜ । ବାରମ୍ବାର ଖୋଲିବାରୁ ହୁଏତ, ଭାଙ୍ଗସବୁ ଚିରି ଚିରି ଆସିଲାଣି । ଖୋଲି ଦେଖିଲି ଯାହା, ତାହାକୁ ମୁଁ ଏ ଦୀର୍ଘ ଦିନ ଭିତରେ ଭୁଲି ସାରିଥିଲି । ଆଉ କେଉଁଠି ମଧ୍ୟ ଏ କାଗଜ ଥିବାର ବିଶ୍ୱାସ ନାହିଁ । ଏହା ମୋର ବାହାଘର କାଗଜ, ଯାହା ରାଉରକେଲାର କନିଷ୍ଠ ଧରମଭାଇ ଅଜୟ ମାମୁଁ (ଶ୍ରୀ ଅଜୟ କୁମାର ମହାନ୍ତି)ଙ୍କ ସଙ୍ଗେ ମିଶି ବୋଉ ଲେଖିଥିଲା । ପିଲାଦିନେ ସବୁବେଳେ କେତେ ଭଲଶିକ୍ଷା ଦେଉଥିଲା ମୋତେ । ବାହାଘର ପରଠାରୁ ଓ ମୁଁ ନିଜେ ବାପା ହୋଇଗଲା ପରଠାରୁ ବୋଧହୁଏ ଆଉ ଉପଦେଶ ଦେଇ ନାହିଁ । ନିଜେ ସବୁବେଳେ କର୍ତ୍ତବ୍ୟକୁ ଆଗରେ ରଖିଥିଲା । କେହି କେବେ କହି ପାରିବ ନାହିଁ ଯେ ତାରାମଣି କେବେ କାହାପ୍ରତି, ପରିବାର ପ୍ରତି, କର୍ତ୍ତବ୍ୟରେ ଅବହେଳା କରିଛି । ମୋତେ ମଧ୍ୟ ସେ ପିଲାଦିନେ ଦେଇଥିଲା କର୍ତ୍ତବ୍ୟର ଦୀକ୍ଷା ଓ ଶେଷରେ ତା ଟ୍ରଙ୍କ୍‌ରେ ରଖି ଯାଇଛି ମୋ

ବାହାଘର ବେଳେ ଦେଇଥିବା ଆଶୀଷ ଓ ଉପଦେଶ। ସେଇ ୩୧ ଜାନୁୟାରୀ ୧୯୭୧ ଦିନ ଅନୁଷ୍ଠିତ ହୋଇଥିବା ଆୟୁଷ୍ମାନ୍ ଭାରତଭୂଷଣ ଓ ଆୟୁଷ୍ମତୀ ଆରତୀ ରାଣୀଙ୍କ ଶୁଭ ପରିଣୟ ଉପଲକ୍ଷେ ସ୍ନେହୋପହାରର '**ଭାରତ ପ୍ରତି**' ଲେଖାର ଶେଷ ଅଂଶ ଉଦ୍ଧାର କରି ଏ ଆଖ୍ୟାୟିକା ଶେଷ କରୁଛି।

କି ଶୁଭରେ ଆଜି ରାତି ପାହିଥିଲା
କି ଦେଖିଲା ମୋର ନେତ୍ର,
ଆନନ୍ଦରେ ମୋର ଛାତି ଫୁଲି ଉଠେ
କମ୍ପି ଉଠେ ମୋର ଗାତ୍ର ।

ଭାରତ ବର୍ଷରେ ଭାରତ ନାମରେ
ଜନମ ଲଭିଣ ତୁହି,
ପିତା ମାତାଙ୍କର ସୁନାମ ରଖିବୁ
କିରତୀ ରଖିବୁ ମହୀ ।

ବଡ଼ବାପା ଦାଦା ଖୁଡ଼ି ଆ'ବୋଉ
ଯେତେ ଯେ ଅଛନ୍ତି ଘରେ,
ସଭିଙ୍କର ଆଶା ଏକାନ୍ତ ଭରସା
ମାନ ରଖିବୁ ମହୀରେ ।

ଅତି ଅଳିଅଳେ ବଢିଅଛୁ ତୁହି
ଜାଣିନୁ ସଂସାର କିସ,
ହାତ ମାପି ବାବୁ ଚାଖଣ୍ଡେ ଚାଲିବୁ
କେହି ନ ଧରିବେ ଦୋଷ ।

ତୋ ମୁଣ୍ଡରେ ଆଜି ସଂସାରର ଭାର
ଲଦି ଦେଉଅଛି ମୁହିଁ,
ନୂଆ ସାର୍ଥିଟିକୁ ପାଇଣ ସିନିହ
ଡ଼ୋରେ ବାନ୍ଧି ନେବୁ ତୁହି ।

ସୁଖରେ ସଂସାର ହସି ଉଠୁ ତୋର
ହସି ଉଠିବ ମୋ ଘର,
ଆରତୀ ତୋହର ଅର୍ଦ୍ଧାଙ୍ଗିନୀ ପରା
ନ କରିବୁ କେବେ ପର ।

ପ୍ରଥମେ କର୍ତ୍ତବ୍ୟ ଦ୍ୱିତୀୟରେ ପତ୍ନୀ
ସଦା ମନେ ଥିବୁ ଧ୍ୟାଇ,
ପାଠ ପଢି ବାପ ବିଦ୍ୱାନ ହୋଇଛୁ
କିବା ବୁଝାଇବି ମୁହି ।

ଏ ଶୁଭ ଦିନରେ ଶୁଭ ମଙ୍ଗଳରେ
ଆଶିଷ ଦେଉଛି ବୋଉ,
ଭାରତର ସଙ୍ଗେ ଆରତୀ ରାଣୀର
ସବୁଦିନ ସୁଖେ ଯାଉ ।

ନବ ଦମ୍ପତିଙ୍କୁ ସାହା ହୋଇ ଥାନ୍ତୁ
ଜଗତ୍ର ଠାକୁର ସେହି,
ବାବୁରେ ଭାରତ ସଦା ତାଙ୍କଠାରେ
ଲୟ ରଖିଥିବୁ ତୁହି ।

ଏ ଶୁଭ ଦିନରେ କିବା ଦେଇ ବାବୁ
ମନକୁ ତୋଷିବି ତୋର,
ହିତ ଉପଦେଶ ଘେନିବ ଦମ୍ପତି
ଯାଉଛି ବୋଉ ତୋହର ।

•

ଶୁଭାକାଂକ୍ଷିଣୀ
**ବୋଉ**